# କଥା ଗୋଟିକୁ କବିତାଟିଏ

## ଚତୁର୍ଥ ଖଣ୍ଡ

ଲେଖକ :
ଉଦୟନାଥ ଷଡ଼ଙ୍ଗୀ

ପ୍ରକାଶକ :
ରବୀନ୍ଦ୍ରନାଥ ମହାନ୍ତି
କଟକ

ପ୍ରଥମ ସଂସ୍କରଣ—୧୯୮୧

ମୂଲ୍ୟ—ଦୁଇଟଙ୍କା ମାତ୍ର

ମୁଦ୍ରାକର :
ନବ ପବ୍ଲିଶିଂ ପ୍ରେସ୍,
ବାଲୁବଜାର, କଟକ-୨

# KATHA GOTIKU KABITATIE

## Fourth Part

*Writer :*
**Udayanath Sarangi**

*Publisher :*
**Rabindranath Mohanty**
*First Edition :* **1981**
*Price :*
**Rupee One & Half Only**
*Printer :*
**New Publishing Press**
**Balubazar, Cuttaok-2**

# ତା ପରେ ?

ତା ପରେ ?

ତା ପରେ ମୁଁ ବଦଳି ହୋଇଗଲି ବନପୁରକୁ ।

ବନପୁର ନପଟ ମଫସଲ ଅଞ୍ଚଳର ଗୋଟିଏ ପଡ଼ା ଗାଁ । ସେଠାକୁ ଯିବାଆସିବା କରିବାକୁ କୌଣସି ପଥ ନାହିଁ କି ରୋଗ ବଇରାଗ ହେଲେ, ସେଥିରୁ ଭଲ ହେବା ପାଇଁ କୌଣସି 'ପାଥି' ନାହିଁ ।

ପାଥି କଅଣ ବୁଝିପାରୁ ନାହିଁ ?

ଏଇ ଏଲୋପାଥି, ହୋମିଓପାଥି; ହାଇଡ୍ରୋପାଥି, ନେଚରପାଥି —ଏମିତି କୌଣସି ପ୍ରକାର ଚିକିତ୍ସା ବ୍ୟବସ୍ଥା ।

କବିରାଜ ଗୁଣମଣି ହିଁ ସେଠାରେ ଏକମାତ୍ର ଆଶା ଭରସା । ସେ ଏକାଧାରରେ ବଇଦ, ଜ୍ୟୋତିଷ, ସର୍ବଜ୍ଞ ପଣ୍ଡିତ ଓ ଗ୍ରାମର ମାମଲତି-କାର । ଯାହାର କିଛି ଆପଦ ବିପଦ ପଡ଼ିଲା, ସେ ଯାଇ ଗୁଣମଣିଙ୍କ ଦୁଆରେ ହାଜର ।

ଗୁଣମଣିଙ୍କ ବାପା ଦୟାନିଧି ମଧ୍ୟ ଥିଲେ ବଡ଼ ବୈଦ୍ୟ ଓ ଗ୍ରାମର ମାମଲତିକାର । ଗୁଣମଣି ତାଙ୍କର ଏକମାତ୍ର ଯୋଗ୍ୟ ପୁତ୍ର । ଯେତିକି ଗୁଣମଣିଙ୍କଠାରୁ ତାଙ୍କ ବାପା ଦୟାନିଧିଙ୍କର ବହୁତ କଥା ମୁଁ ଶୁଣିଅଛି । ସେ ସବୁ କହିବସିଲେ ଗୋଟାଏ ବଡ଼ ପୋଥି ହେବ ।

ଥରେ ଗୁଣମଣି ବାପାଙ୍କ ସାଙ୍ଗରେ ଆସୁଥିଲେ । ଖରାଦିନ । ଗୋଟିଏ ପିଲା ବିଲରେ ଘାସ କାଟୁଥିଲା । ତା ଦାଆଟିକୁ ହିଡ଼ଉପରେ ରଖିଦେଇ ସେ ଗଛମୂଳେ ଶୋଇପଡ଼ିଲା । କିଛି ସମୟ ପରେ ଉଠି ଦେଖିଲା ବେଳକୁ ଦା'ଟା ତାତି ଯାଇଅଛି । ସେତିକବେଳେ ସେ ବାଟରେ ଦୟାନିଧି ଆସୁଥିଲେ । ପିଲାଟି ଦଉଡ଼ିଆସି ତାଙ୍କ ଗୋଡ଼ତଳେ ପଡ଼ିଗଲା । କହିଲା, "ମୋ ଦାଆ ଦେହ ଖରା ତାତିଯାଇଛି । କଅଣ କରିବ ?"

ଦୟାନିଧି କହିଲେ, "ଆରେ, ତୋ ଦାଆକୁ ଜର ହୋଇଛି । ତାକୁ ପାଣିରେ ବୁଡ଼ାଇ ଦେ; ଜର ଛାଡ଼ିଯିବ, ତାତି କମିଯିବ ।"

ପିଲଟି ସାଙ୍ଗେସାଙ୍ଗେ ନେଇ ତାଆକୁ ପାଣିରେ ବୁଡ଼ାଇଦେଲା । ତାଆ ଥଣ୍ଡା ହୋଇଗଲା; ଜର ଛାଡ଼ିଗଲା ।

ଗୁଣମଣି ତ ଏ କଥାଟା ବାପାଙ୍କଠାରୁ ଶିଖିଥିଲେ । ଥରେ ଜଣେ ଲୋକ ଆସି ତାଙ୍କୁ କହିଲା, "ମୋ ମାଆକୁ ଜର ଜର । କଅଣ ଟିକଏ ଔଷଧ ଦିଅ ।"

ଗୁଣମଣି ସାଙ୍ଗେସାଙ୍ଗେ କହିଲେ, "ଆଗ ନେଇ ମାଆକୁ ପୋଖରୀ ପାଣିରେ ଆଚ୍ଛା କରି ବୁଡ଼ାଇ ଆଣ । ଜର ଛୁଟିପିଟି ହୋଇ ପଳାଇଯିବ ।"

ଲୋକଟି ତାହାହିଁ କଲା ।

ତା ପରେ ? ତା ପରେ ସନ୍ନିପାତ ଓ ବୁଢ଼ୀର ମୃତ୍ୟୁ ।

ଦୟାନିଧି ସବୁ ରୋଗର ଔଷଧ ନାନା ପ୍ରକାର ଚେର ମୂଳରୁ ନିଜେ ତିଆରି କରୁଥିଲେ । ଗୁଣମଣିଙ୍କୁ ତାହା ଗୋଟିଗୋଟି କରି ଶିଖାଇଲେ । ଗୁଣମଣି କିନ୍ତୁ ସେଥିରୁ କେବଳ 'ଭେଦି' ଔଷଧଟି ମନେ ରଖିଲେ; ଆଉ କିଛି ଶିଖିପାରିଲେ ନାହିଁ ।

'ଭେଦି' ଔଷଧ କଅଣ ଜାଣ ? ଯେଉଁ ଔଷଧ ଖାଇଲେ ଝାଡ଼ା ହୁଏ । ତାକୁ ଇଂରାଜୀରେ କହନ୍ତି 'ପରଗେଟିଭ୍' । ଅନ୍ୟ ପ୍ରକାରରେ କହିଲେ, "ଫରଗେଟ ମି ନଟ୍"—ମୋତେ ଭୁଲିଯାଅ ନାହିଁ । ସେ ଭେଦି ଔଷଧ ଯେ ଥରେ ଖାଇବ, ସେ ଆଉ କେବେ ତାକୁ ଭୁଲିପାରିବ ନାହିଁ । ଜୀବନଯାକ ପାଇଖାନାକୁ ଦଉଡ଼ୁଥିବ ।

ଦୟାନିଧି ଅତି ବୁଢ଼ା ହୋଇଗଲେ । ତାଙ୍କ ମୁହଁରେ ଲମ୍ବା ଦାଢ଼ୀ । ଦାଢ଼ୀ ନ ଥିଲେ କେହି ପଣ୍ଡିତ ବୋଲି ମାନିବେ ନାହିଁ ଯେ ।

ସେ କାଳରେ ତ ବିଜୁଳିବତି ନ ଥିଲା । ସେ ଗ୍ରାମକୁ ଲଣ୍ଠନଟିଏ ବି ଯାଇ ନ ଥିଲା । ଦୀପରେ ପୁନାଙ୍ଗତେଲ ପକାଇ ଲୋକେ ଜାଳୁଥିଲେ । ସେହି ଆଲୁଅରେ ଅନ୍ଧାର ରାତିରେ ସବୁ କାମ କରାଯାଉଥିଲା ।

ଦିନେ ରାତିରେ ସେହି ଦୀପ ଆଲୁଅ ପାଖରେ ବସି ଦୟାନିଧି ଶାସ୍ତ୍ର ପୋଥି ପଢ଼ୁଥିଲେ । ପଦେ ଲେଖାଅଛି, ଯାହାର ଦାଢ଼ି ଦୁଇ ମୁଠାରୁ ବେଶୀ ଲମ୍ବ, ସେ ବୋକା । ଦୟାନିଧିଙ୍କ ମନ ଦବିଗଲା । ନିଜ ଦାଢ଼ିକୁ ସେ ହାତ ମୁଠାରେ ମାପି ପକାଇଲେ । ଦେଖିଲେ, ଦୁଇ ମୁଠା ବାଦ୍ ଆଉ

ଦାଢ଼ି ତଳକୁ ଲମ୍ବି ଯାଉଛି । ମନେମନେ ଭାବିଲେ, ମୋତେ ତ ସମସ୍ତେ ବୋକା ବୋଲି ଭାବୁଥିବେ । ନା, ମୁଁ ଆଉ ଲମ୍ବା ଦାଢ଼ି ରଖିବି ନାହିଁ । ସେ ସଙ୍ଗେ ସଙ୍ଗେ ଦାଢ଼ିକୁ ଦୁଇ ହାତରେ ମୁଠାଇ ଧରି ଦୀପ ନିଆଁକୁ ଦେଖାଇ ଦେଲେ । ଧଳାକଳା ବାଳ ଚର୍ ଚର୍ କରି ଜଳିଗଲା । ଯେତେବେଳେ ହାତରେ ଆସି ନିଆଁ ଧାସ ଲଗିଲା; ସେ ଆଉ ସମ୍ଭାଳିପାରିଲେ ନାହିଁ । ହାତମୁଠା ଫିଟାଇଦେଲେ । ତା ପରେ—ବାସ୍, ମୁହଁ ସଫା । ଖାଲି କଅଁଳ ଦାଢ଼ି ସଫା ହେଲା, ମୁହଁ ସାରା ପୋଡ଼ିଗଲା । ବାପାଙ୍କ ବିକଳ ଡାକ ଶୁଣି ଆଉ ଘରୁ ଗୁଣମଣି ଦଉଡ଼ି ଆସିଲେ । ପ୍ରଥମେ ବାପାଙ୍କୁ ଚିହ୍ନିପାରିଲେ ନାହିଁ । ବାପା ତାଙ୍କୁ କହିଲେ, "ଆମ ଘରେ ଯେତେ ପୋଥି ଅଛି, ସେ ସବୁ ନିଆଁ ଲଗାଇ ପୋଡ଼ି ଦେ । ସେ ଗୁଡ଼ାକ ଘରେ ରଖି ଲାଭ ନାହିଁ । ପୋଥିରେ ଯାହା ଲେଖା ରହିଛି—ସେ ସବୁ ମିଛକଥା । ଆମର ତାହା ଦରକାର ନାହିଁ ।

କେତେକ ଦିନ ବହୁତ କଷ୍ଟ ପାଇ ଦୟାନିଧି ମଲେ । ଏଣିକି ରହିଲେ ଗୁଣମଣି ଓ ଗୁଣମଣିଙ୍କ ଭେଦ ଔଷଧ । ସେଇଥିରେ ଗୁଣମଣି ସବୁ କାମ ହାସଲ କଲେ ।

ଶୁକୁରି ମାଉସୀର ଛେଳି ହଜିଗଲା । ସେ ଆସି ଗୁଣମଣିଙ୍କ ପାଖରେ ଧାରଣା ଦେଲା, "ପଣ୍ଡିତେ, ମୋ ଛେଳିଟା ଗଲା କୁଆଡ଼େ ? ତାକୁ ପାଇବି କିପରି ? ଟିକିଏ ଉପାୟ ବତାଇ ଦିଅ ।"

ଗୁଣମଣି ମାଉସୀକୁ ପାନେ ଭେଦ ଔଷଧ ଦେଇଦେଲେ । ସେ ତାହା ଖାଇଲା । ଫଳରେ ଯାହା ହୁଏ । ଗୁଣପାକ ସେ ପଡ଼ିଆବାଡ଼ିକୁ ଦଉଡ଼ିଲା ।

ହେଟା ଭିତରେ ଛେଳିଟି କଅଁାବୁଦା ମୂଳେ ଲୁଚି ଶୋଇଥିଲା । ଯୋଗ ତ ! ତାରି ପାଖରେ ମାଉସୀ ବସି ପଡ଼ିବାକ୍ଷଣି ଛେଳି ଧଡ଼ପଡ଼ ଉଠି ପଡ଼ି ରଡ଼ିଦେଲା—ଅର୍ ର୍ ମେ । ମାଉସୀ ଭାରି ଖୁସି; ଛେଳି କାନକୁ ଧରି ଓଟାରି ଓଟାରି ଘରକୁ ନେଇ ଆସିଲା । ଆଉ ଦିନ ଗାଁସାକ ପ୍ରଚାର କରି ଦେଲା, ଗୁଣମଣିଙ୍କ ପରି ଗୁଣୀ ଲୋକ ଦୁନିଆଁରେ ଆଉ କେହି ନାହାନ୍ତି । ତାଙ୍କର ଭେଦ ଔଷଧ ଯୋଗୁଁ ମୁଁ ମୋ ହଜିଲା ଛେଳି ଫେରି ପାଇଲି ।

ପାଖ ଆଖ ଗ୍ରାମରେ ଟ୍ରେର ମାଡଲେ । ପ୍ରତିଦିନ ରାତିରେ କାହା ଘରୁ ନା କାହା ଘରୁ ଚୋରି ହେଲା । କିନ୍ତୁ ବନପୁରକୁ ଚୋରମାନେ ଆଦୌ ଆସିପାରିଲେ ନାହିଁ । ଗୁଣମଣି ଗାଁଆ ଲୋକଙ୍କୁ ପାନେ ଲେଖାଏଁ ଭେଷଜ ଔଷଧ ଦେଇଥିଲେ । ରାତିସାକ ତ ସମସ୍ତେ ଅନିଦ୍ରା, ପଡ଼ିଆ ବାଡ଼କୁ ଯାଉଛନ୍ତି; ଘରକୁ ଆସୁଛନ୍ତି । ଚୋରମାନେ ଆଉ କେତେବେଳେ ସେ ଗ୍ରାମକୁ ଆସିବେ ?

ଗ୍ରାମର ଏକମାତ୍ର ଧନୀ ଲୋକ ଗୋବର୍ଦ୍ଧନ ଦାସ । ଆଗେ ଜମିଦାର ଥିଲେ । ଏବେ ଜମିଦାରୀ ଯାଇଛି ସିନା; କିନ୍ତୁ ଲୋକଙ୍କର ଖାତିର ସେହିପରି ରହିଅଛି । ସେ ବଡ଼ ରାଗୀ । ଟିକିଏ କଥାରେ ସମସ୍ତଙ୍କୁ ଗାଳି ଦିଅନ୍ତି । ନିଜ ଘରର ଚାକରଙ୍କ ହାତ ମାଡ଼ ଲଗାନ୍ତି । ଗାଁଯାକର ସବୁ ଲୋକ ତାଙ୍କୁ ଡରିହରି ରହିଥାଆନ୍ତି ।

ଗୋବର୍ଦ୍ଧନ ବାବୁଙ୍କୁ ଜର ହେଲା । ଅସାଧ ଜ୍ୱର । ଡାକରା ପଡ଼ିଲା ସ୍ୱଦେଶ କବିରାଜ ଗୁଣମଣିଙ୍କୁ ।

ଗୋବର୍ଦ୍ଧନ ବାବୁ ଖଟରେ ଶୋଇ କୁନ୍ଥାଉଅଛନ୍ତି । ଗୁଣମଣି ଯାଇ ଖଟ ପାଖରେ ଠିଆ ହେଲେଣି; ତାଙ୍କ ହାତର ନାଡ଼ି ଦେଖିଲେ । ବାପା ନାଡ଼ି ଦେଖିଲା ବେଳେ ଯେପରି ଆଖି ବୁଜି ମୁହଁ କରନ୍ତି, ସେ ତ ତା ଦେଖିଅଛନ୍ତି । ତେଣୁ ସେହିପରି ମୁହଁ ଗମ୍ଭୀର କରି ଚାଳକୁ ଚାହିଁଲେ । ଏ କଣରେ ବାବା ! ଚାଳେ ଦୁଇ ଚାରିଟା ଝିଟିପିଟି ଏପାଖ ସେପାଖ ଡେଇଁଅଛନ୍ତି ।

ଗୁଣମଣିଙ୍କର ପୁରୁଣା କଥା ମନେ ପଡ଼ିଗଲା । ସେ ପିଲା ହୋଇଥାଆନ୍ତି । ଗୋବର୍ଦ୍ଧନବାବୁ ବି ସେତେବେଳେ ପିଲା । ତାଙ୍କୁ ଜର ହୋଇଥିଲା । ଗୁଣମଣିଙ୍କ ବାପା ଦୟାନିଧି ରୋଗୀ ଦେଖିବାକୁ ଆସିଥିଲେ । ନାଡ଼ି ଧରି କହିଲେ, "ତୁମେ ଆଜି ମୁଢ଼ି ଖାଇଅଛ, ସେଇଥିପାଇଁ ଜର ବଢ଼ିଗଲା ।"

ପରେ ଗୁଣମଣି ବାପାଙ୍କୁ ପଚାରିଥିଲେ, "ସେ ମୁଢ଼ି ଖାଇଛନ୍ତି ବୋଲି ନାଡ଼ିରୁ କପରି ଜଣାଗଲା ?"

ବାପା ଉତ୍ତର ଦେଲେ, "ସବୁ କଥା କଣ ନାଡ଼ିରୁ ଜଣାଯାଏ ? ତାଙ୍କ ଖଟତଳେ ଦୁଇ ତିନିଟା ମୂଢ଼ି ପଡ଼ିଥିଲା । ତାକୁ ଦେଖି ମୁଁ ଅନ୍ଦାଜ କରିନେଲି ଯେ, ସେ ମୂଢ଼ି ଖାଇଅଛନ୍ତି । ବୁଦ୍ଧି ଖଟେଇ ରୋଗୀଙ୍କ ଚିକିତ୍ସା କରାଯାଏ ।"

ଗୁଣମଣିଙ୍କ ହାତମୂଠାରେ ତ ଗୋବର୍ଦ୍ଧନ ବାବୁଙ୍କ ହାତ ରହିଅଛି । ସେ ଆଖି ଦରବୁଜା କରି ଦୁଇ ତିନିଥର ନାଡ଼ି ଚିପି କହି ପକାଇଲେ, "ଆପଣ ଆଜ ଖାଅନ୍ତା ଟିଟିପିଟି ଖାଇଅଛନ୍ତି । ଟିଟିପିଟି ଯେମିତି ଡିଅନ୍ତି, ଆପଣଙ୍କ ନାଡ଼ି ସେହିପରି ଡେଉଁଅଛି ।"

ବାସ୍, ଆଜ କିଛି କହିବାକୁ ବେଳ ମିଳିଲା ନାହିଁ । ତା ପରେ ?

———

# କିଏ ବୋକା ?

ବହୁତ ଚେଷ୍ଟା ପରେ ଖଣ୍ଡିଏ ଚାକିରି ମିଳିଲା—କଟକ ସହରରେ । ଦରମା ଅଳ୍ପ । ଗ୍ରାମରୁ ପିଲାମାନଙ୍କୁ ଆଣି ସ୍ୱତନ୍ତ୍ର ବସାଘର କରି ରହିବା ସମ୍ଭବ ନୁହେଁ । ତେଣୁ ଗୋଟିଏ ହୋଟେଲରେ ଆଶ୍ରୟ ନେଲି ।

କେତୁଟା ଦିନଭିତରେ ଜାଣିଗଲି, ହୋଟେଲ ଆଉ ମୋତେ ପୋଷେଇବ ନାହିଁ । ଭାତରେ ଗୋଡ଼ି, ଡାଲିରେ ପୋକ, ତରକାରି ସାଗ । ମୋ ଦେହ ଖରାପ ହେଲା । ଔଷଧ କିଣିବାରେ ଦରମାରୁ ଅଧେ ପଇସା ଚାଲିଗଲା ।

ଗୋଟିଏ ସ୍ୱତନ୍ତ୍ର ଘର ଭଡ଼ା ନେଲି । ଛୋଟ ଘରଟିଏ । ଗ୍ରାମରୁ ଚାକର ପିଲାଟିଏ ମଧ୍ୟ ଆଣିଲି । ସେ ରନ୍ଧାବଢ଼ା କରିବ, ଘର ଜଗିବ । ସେଥିରେ ଖର୍ଚ୍ଚ କମ୍, ଖାଇବାରେ ମଧ୍ୟ ଅଶାନ୍ତି ହେବ ନାହିଁ ।

ପିଲାଟିର ନାଁ ନିର୍ମଳ । ସମସ୍ତେ ଡାକନ୍ତି 'ନିମା' ବୋଲି ।

ପ୍ରଥମ ଦିନ ତାକୁ ଘରକଥା ସବୁ ବୁଝାଇଦେଲି । ମଫସଲର ପିଲା, କଟକ ସହର କେବେ ଦେଖି ନାହିଁ । ତାକୁ କହିଲି, "ପଦାକୁ କୁଆଡ଼େ ଯିବୁ ନାହିଁ । କଟକ ସହର—ବାର ଗଳି, ଢେର ରାସ୍ତା । ବାଟ ବଣା ହୋଇଯିବୁ ।"

ପ୍ରଥମ ଦିନ ସନ୍ଧ୍ୟା । ମୁଁ ଅଫିସରୁ ଆସି ବାହାରକୁ ବୁଲି ବାହାରିଲି । ନିର୍ମଳକୁ ବୁଝାଇଦେଲି, "ତୁ ଦାଣ୍ଡ କବାଟ ଭିତରୁ ଦେଇଦେ । ଲୁଚି କରିଥିବୁ, ମୁଁ ଆସିଲେ ଖାଇବା । ଘର ଛାଡ଼ି କୁଆଡ଼େ ଯିବୁ ନାହିଁ ।"

ମୁଁ ଜଣେ ବନ୍ଧୁଙ୍କ ପାଖକୁ ଚାଲିଗଲି । ସେଠାରେ ବସି ଗପସପ କରୁକରୁ ଟିକିଏ ବିଳମ୍ବ ହୋଇଗଲା । ରାତି ଦଶଟା ହେବ । ବନ୍ଧୁଙ୍କଠାରୁ ବିଦାୟ ନେଇ ଘରକୁ ଫେରିଲି ।

କବାଟ ଭିତରୁ ବନ୍ଦ । ମୁଁ ନିର୍ମଳକୁ ଡାକିଲି । ଥରେ, ଦୁଇ ଥର, ତିନି ଥର । ନିର୍ମଳ ଶୁଣିଲା ନାହିଁ । ଭାବିଲି, ପିଲାଲୋକ, ବୋଧହୁଏ ଶୋଇ ପଡ଼ିଅଛି ।

କବାଟ ବାଡ଼େଇଲି, ଖୁବ୍ ଜୋର୍‌ରେ ଧକ୍କା ଦେଲି । ତଥାପି କବାଟ ଫିଟିଲା ନାହିଁ । ବହୁତ ବେଳ କଟିଗଲା । ଡାକଡାକ ପାଟି ପଡ଼ିଗଲା । କବାଟ ବାଡ଼େଇ ବାଡ଼େଇ ହାତ ଦରଜ ହୋଇଗଲା । ତଥାପି ତା ନିଦ ଭାଙ୍ଗିଲା ନାହିଁ କି କବାଟ ଫିଟିଲା ନାହିଁ ।

ବଡ଼ ବିରକ୍ତ ହୋଇପଡ଼ିଲି । ପିଟିପିଟି କବାଟକୁ ଭାଙ୍ଗିଦେଲି । ଘରଭିତରକୁ ପଶି ଆସି ଦେଖିଲି, ଘୁରୁଆଡ଼ ଅନ୍ଧାର । ଡାକିଲି, "ନିର୍ମଳ, ନିମା-ନିମା-ନିମା ! ଆବେ ବଦମାସ୍ ନିମା ।" ତଥାପି କେହି ଶୁଣିଲେ ନାହିଁ ।

ଯୋଗକୁ ହାତରେ ଟର୍ଚ୍ଚଟା ଥିଲା । ଜଳାଇଲି—ମାଏ ନିମା କାହିଁ ? ଲୁଚି ହେବ କଅଣ, ଚୂଲି ବି ଲାଗି ନାହିଁ ।

ପୁଣି ଡାକିଲି—ନିମା, ନିମା, ନିମା । ନିମା ନା ଫିମା, କେହି କୁଆଡ଼େ ନାହାନ୍ତି ।

ମୋ ମୁଣ୍ଡ ବାତଚକ୍ର ପରି ଘୂରିଗଲା । ଭାବିଲି, ଗଲା କୁଆଡ଼େ ? କବାଟ ତ ଭିତରୁ ବନ୍ଦ ଥିଲା; ଗଲା କିପରି ? ଭଙ୍ଗା କୂଅ ଭିତରେ ଗଳି ପଡ଼ି ନାହିଁ ତ ? ତା ମାଆକୁ ମୁଁ ଗୋଟାଏ ପୁଅ ଆଣି ଦେବି କୁଆଡ଼ୁ ? ବର୍ତ୍ତମାନ ପୁଲିସ ଆସିବ, ନାନା ବିଭ୍ରାଟ ସୃଷ୍ଟି ହେବ । କଅଣ କରିବ ?

ମୁଣ୍ଡରେ ହାତ ଦେଇ ତଳେ ବସିପଡ଼ିଲି । ମନ ଛନଛନ, ଆଖି କନକନ ହେଉଥାଏ ।

ଦେଖିଲି, ଖଟ ଉପରର ରେଜେଇଟା ଖଟ ତଳେ ପଡ଼ିଅଛି । ସେଇଟା ମଝିରେ ମଝିରେ ହଲି ଯାଉଅଛି । ଭୂତ ନା କଅଣ ? ଏ ଘରଟା ତା ହେଲେ ଭୂତକୋଠି । ସେହି ଭୂତ ନିମାକୁ ଗିଳି ପକାଇଛି; ରେଜେଇକୁ ନଚାଉଛି !

ଉପରରେ ମୋ ଦେହ ଥର ଉଠିଲା । ତଥାପି ସାହସ ବାନ୍ଧି ଗଛ ତଳକୁ ହାତ ବଢ଼ାଇଲି । ରେଜେଇଟାକୁ ଟାଣିଆଣିଲି ।

ଦେଖିଲି, ତା ତଳେ ଭୂତ ନାହିଁ, ନମା । ଠାଇ କରି ତା ଗାଲରେ ଗୋଟାଏ ଚଟକଣା ବସାଇଦେଲି । କହିଲି, "ତୁ ଏଠାରେ ଏପରି ପଡ଼ି ରହିଅଛୁ । ମୁଁ ଡାକଡାକି ନସ୍ତାନ୍ତ ହେଲିଣି ।"

ନମା କାନ୍ଦକାନ୍ଦ କହିଲା, "ଆପଣ କହିଥିଲେ, ଲୁଚିକରି ଥିବୁ । ତେଣୁ ମୁଁ ଲୁଚି ରହିଥିଲି । ଘରୁ ଆସିଲାବେଳେ ମା କହିଥିଲା—ବାବୁ ଯାହା କହିବେ, ତାହା ମାନି ଚଳିବୁ । ମୁଁ ତୁମ କଥା ମାନି ଲୁଚି ରହିଥିଲି । ମୋତେ ମାରିଲେ କାହିଁକି ?"

ନମା କଥା ଶୁଣି ହସିବି ନା ରାଗିବି, କିଛି ଠିକ୍ କରିପାରିଲି ନାହିଁ । କହିଲି, "ତୁ ଏଡ଼େ ବୋକା ! ମୁଁ କହିଥିଲି, ଲୁଚି କରିଥିବୁ । ଲୁଚିକରି ଥିବୁ କହିଥିଲେ ସିନା, ତୁ ଲୁଚି ବସିଥାଆନ୍ତୁ । ଲୁଚି କରିଥିବୁ, ଲୁଚିକରି ଥିବୁ—ଏ କଥାରେ କଣ କିଛି ଫରକ ନାହିଁ ? ତୁ ଏଇ କଥାଟା ବୁଝିପାରିଲୁ ନାହିଁ ?"

ସେହିଦିନଠାରୁ ମୁଁ ଲୁଚିଖିଆ ଛାଡ଼ିଦେଲି । ପୁରି କରିବାକୁ କହିଲେ, କାଳେ ସେ ପୁଣି ଭୁଲିଯିବ, ସେଥିପାଇଁ ପୁରି ଖାଇବା ମଧ୍ୟ ବନ୍ଦ କରିଦେଲି । ଏବେ କେବଳ ଭାତ ଆଉ ରୁଟି ।

ପିଲାଟି ଭଲ ରାନ୍ଧି ଜାଣେ । ବହୁତ ରକମର ତରକାରି କରେ । ତା କାମରେ ମୁଁ ଖୁବ୍ ଖୁସି । ତା ଦରମା ମଧ୍ୟ ଦୁଇ ଟଙ୍କା ବଢ଼ାଇଦେଲି ।

ବଜାରରେ ନୂଆ ହୋଇ ବନ୍ଧାକୋବି ପଡ଼ିଥାଏ, ଦାମ୍ ଟିକିଏ ବେଶି । ହେଉ ପଛକେ ନୂଆ ଜିନିଷ । ଟଙ୍କାଟିଏ ଦେଇ ଗୋଟିଏ ବନ୍ଧାକୋବି କିଣି ଆଣିଲି ।

ନମାକୁ କହିଲି, "ଏହାକୁ ଯତ୍ନ କରି ରାନ୍ଧ । ବିଳମ୍ବ ହୋଇଗଲାଣି । ମୁଁ ଖାଇଲେ ଅଫିସକୁ ଯିବି ।"

ଘଣ୍ଟାକ ପରେ, ନତ୍ୟକର୍ମ ସାରି ଖାଇବାକୁ ଆସିଲି । ନମା ଭାତ, ଡାଲି ବାଢ଼ିଦେଲା । ଆଜି ତରକାରି କିଛି ନାହିଁ ।

ପଚାରିଲି; "କରେ କୋବି ତରକାରି କଲୁ ନାହିଁକି ?"

ଉତ୍ତର ମିଳିଲା, "ବାବୁ, ସେଦିନ ମୋତେ ବୋକା ବୋଲି କହୁଥିଲ ପରା ! ତୁମେ ଏଡ଼େ ବୋକା ନା ! ତୁମକୁ ବୋକା ଦେଖି ଦୋକାନୀ ଠକି ଦେଇଅଛି ।"

ମୁଁ କିଛି ବୁଝିପାରୁ ନ ଥାଏ । ମୁଁ ବୋକା ହେଲି କାହିଁକି ? ଦୋକାନୀ ମୋତେ ଠକିଦେଲା କିପରି ?

ନମା ପାଟିରୁ ଅନର୍ଗଳ କଥା ଝରୁଥାଏ, "ମୁଁ ସେ କୋବିରୁ ଗୋଟି ଗୋଟି ପତର ଛଡ଼ାଇଲି, ଆରମ୍ଭରୁ ଶେଷଯାଏ । ସବୁଯାକ ଖାଲି ପତର । ଟିକିଏ ହେଲେ ଫଳ ହୋଇ ନାହିଁ, ତରକାରି କରନ୍ତି ଆଉ କଅଣ ? ପତରଯାକ ନେଇ ହାଣ୍ଡିରେ ଫିଙ୍ଗିଦେଲି ।"

ରାଗରେ ମୋ ମୁଣ୍ଡ ଗରମ ହୋଇଗଲା । କଟମଟ କରି ତା ମୁହଁକୁ ଚାହିଁଲି । ସେଥିପ୍ରତି ତାର ନଜର ନ ଥାଏ ।

ଦୋକାନୀ ପଇସା ଲୋଭରେ କୋବିଟାକୁ ଛିଡ଼ାଇ ଆଣିଥିଲା । ଆଉ କିଛି ଦିନ ଯାଇଥିଲେ, ସେଥିରେ ଫୁଲ ହୋଇଥାଆନ୍ତା । ଫୁଲ ପରେ ଫଳ । ସେଇ ଫଳ ସିନା ତରକାରି ହୁଅନ୍ତା । ପତରଗୁଡ଼ାକ ତରକାରି ହେବ କିପରି ?"

ତା ପରେ ମୋର ସେଇ ହୋଟେଲ ହିଁ ଆଶ୍ରା । ନମାକୁ ଗାଆଁରେ ଛାଡ଼ିଦେଇ ଆସିଲି । କହିଲି, "ତୁ ଖାଲି କୋବିଚାଷ କରୁଥା । ତୋ ହାତରେ ରନ୍ଧାରନ୍ଧି କାମ ହେବ ନାହିଁ ।"

———

# ରୋଜଗାରିଆ ପୁଅ

ଆମ ଗାଆଁର ସନାତନ ଅଜା ନାଁ ବୋଧହୁଏ ଶୁଣିଥିବ । କିନ୍ତୁ ତାଙ୍କୁ କେହି ଦେଖି ନ ଥିବ । ସେ ବହୁତ ଦିନ ହେଲା ମରିଗଲେଣି । କିନ୍ତୁ ଗାଁ ଲୋକେ ତାଙ୍କୁ ଏବେ ବି ମନେ ପକାଉଛନ୍ତି ।

ମୁଁ ତାଙ୍କୁ ଦେଖିଅଛି । ଭାରି କାମିକା ଲୋକ । ସବୁବେଳେ ବାଲବାଡ଼ି କାମରେ ଲାଗି ରହୁଥାନ୍ତି । କାହାରି ଉପରେ ରାଗନ୍ତି ନାହିଁ କି କାହାରିକୁ କେବେ ଗାଳି ଗୁଲଜ କରନ୍ତି ନାହିଁ । ତାଙ୍କ କାମ ଭଲ ତ ସେ ଭଲ ।

ଗ୍ରାମର ସ୍କୁଲଟି ସେହି ବସାଇଅଛନ୍ତି । ଠାକୁରଘର ପକା କରାଇଅଛନ୍ତି ସେହି ସନାତନ ଅଜା । ଯେଉଁ ତୋଟାରେ ପିଲାଏ ଖୁସି ମନରେ ଖେଳୁଛନ୍ତି ତାହା ତାଙ୍କର । ଗ୍ରାମର ସବୁ ପିଲାଙ୍କ ପାଇଁ ସେ ତାକୁ ଛାଡ଼ି ଦେଇଅଛନ୍ତି ।

ଶୁଣିଛି, ସନାତନ ଅଜା ଯେତେବେଳେ ଜନ୍ମ ହୋଇଥିଲେ, ସେତେବେଳେ ତାଙ୍କ ବାପା ଅତି ଗରିବ ଥିଲେ । ଅଜା ବଡ଼ ହେବାରୁ ସବୁବେଳେ କାମରେ ଲାଗିଲେ । ଜମିଦାରଙ୍କଠାରୁ, ଜମି ଭାଗ ଆଣି ଚାଷ କଲେ । ପ୍ରତିବର୍ଷ ଧାନ, ମୁଗ, କୋଳଥ ଅମଳ କଲେ ।

କ୍ରମେ ତାଙ୍କ ଅବସ୍ଥା ବଦଳିଗଲା । ବହୁତ ଜମି ନିଜେ କିଣିଲେ । ବାଡ଼ି ବଗିଚା କଲେ । ଖାଇ ପିଇ ଆନନ୍ଦରେ ଚଳିଲେ । କଠୋର ପରିଶ୍ରମ ଫଳ ମିଳିଲା ।

ସେଇ ସନାତନ ଅଜାଙ୍କର ତିନି ପୁଅ । ସେମାନଙ୍କୁ ସେ ସହରକୁ ପଠାଇ କଲେଜରେ ପାଠ ପଢ଼ାଇଲେ । ସବୁ ପୁଅ ଯୋଗ୍ୟ ହେଲେ ।

ବଡ଼ପୁଅ ମନମୋହନ ସରକାରି ଚାକିରି କଲେ । ବଢ଼ି ବଢ଼ି ବଡ଼ ହାକିମ ହେଲେ । ସେ ହେଲେ ଜିଲା କଲେକ୍ଟର । ତାଙ୍କ ନାମ ଖ୍ୟାତି ଚାରିଆଡ଼େ ବ୍ୟାପିଗଲା । ପି: ଏ:, ସେକ୍ରେଟେରି, କିରାଣୀ, ପିଅନ, ଅର୍ଦ୍ଦଳୀ ବହୁତ ଲୋକ ତାଙ୍କର କଥା ପଦକ ପାଇଁ ଚାହିଁ ରହିଲେ ।

ସବୁବେଳେ ଚଉକିରେ ବସି କାମ କରିବାକୁ ପଡ଼େ । ଯୁଆଡ଼େ ଯିବାକୁ ହେଲେ ମଟରଗାଡ଼ି, ରେଳଗାଡ଼ି, ଉଡ଼ାଜାହାଜ । ପାଦେ ହେଲେ ଚାଲିବାକୁ ହୁଏ ନାହିଁ ।

ବସିବସି ତାଙ୍କୁ ବଦହଜମୀ ରୋଗ ଧରିଲା । ଯାହା ଖାଇଲେ ହଜମ ହେଲା ନାହିଁ । ଦେହ କ୍ରମେ ଶୁଖିଗଲା । ସେ ହୋଇଗଲେ ବେମାରିଆ । ଡାକ୍ତର ଆଉ ଔଷଧ ହିଁ ତାଙ୍କର ସବୁଦିନର ସାଥୀ ହେଲେ ।

ମଝିଆଁ ପୁଅ ମଦନମୋହନ । ସେ ବହୁତ ପାଠ ପଢ଼ିଲେ, ପରୀକ୍ଷାରେ ପାଶ୍ କଲେ । କିନ୍ତୁ ଚାକିରି କଲେ ନାହିଁ । ବାପାଙ୍କଠାରୁ ଅଳ୍ପ କିଛି ଟଙ୍କା ନେଇ ଦୋକାନଟିଏ ଖୋଲିଲେ ।

ହେଲା ଦୋକାନ ବଢ଼ି ଚାଲିଲା । ଗାଆଁରୁ ସେ ସହରକୁ ଗଲେ । କଟକ, ସମ୍ବଲପୁର, ବ୍ରହ୍ମପୁର—ସବୁଠାରେ ତାଙ୍କ ବ୍ୟବସାୟର ଶାଖା ଗଢ଼ି ଉଠିଲା । ମାନେଜର, ଗୁମାସ୍ତା, ସାହାଯ୍ୟକାରୀ—ଏମିତି ବହୁତ ଲୋକ ତାଙ୍କ ପାଖରେ ଚାକିରି କଲେ । ପ୍ରତିଦିନ ହଜାର ହଜାର ଟଙ୍କା ଆୟ ହେଲା । ପିଲା ଦିନେ ସେ ଶୁଣିଥିଲେ – ବ୍ୟବସାୟ କଲେ ଲକ୍ଷ୍ମୀ ମିଳନ୍ତି । ତାଙ୍କ ଜୀବନରେ ତାହା ଠିକ୍ ବୋଲି ସେ ଦେଖାଇଦେଲେ ।

ଗଦିରେ ସବୁବେଳେ ବସିବସି ତାଙ୍କ ପେଟ ବଢ଼ିଗଲା । ଦେହ ମୋଟା ହୋଇଗଲା । ଗୋଲଗାଲ୍ ଚେହେରା, ଥଳିଲା ପେଟ । ପାଦେ ଚାଲିବା ଶକ୍ତି ରହିଲା ନାହିଁ । ଦଉଡ଼ିଯିବା ତ ଦୂରର କଥା । ଚାରି ଛଅ ପଦ କଥା କହିଲେ ଧଇଁସଇଁ ହୋଇଯାଆନ୍ତି ।

ଏ ଦୁଇ ଭାଇ କେବେ ଗ୍ରାମକୁ ଆସିବାକୁ ସମୟ ପାଆନ୍ତି ନାହିଁ । ଘର ସାଙ୍ଗରେ ବିଶେଷ ସମ୍ପର୍କ ବି ନ ଥାଏ । ଅବଶ୍ୟ ବାପାଙ୍କ ହାଲଚାଲ ବରାବର ବୁଝନ୍ତି । ବାପାଙ୍କୁ ବେଶ୍ ଭକ୍ତି କରନ୍ତି ।

ସାନ ପୁଅ ମଥୁରାମୋହନ । ବଡ଼ ଦୁଇ ଭାଇଙ୍କ ଭଳି ବହୁତ ପାଠ ପଢ଼ିଲେ । ବିଶ୍ୱବିଦ୍ୟାଳୟ ଡିଗ୍ରୀ ହାସଲ କଲେ । କିନ୍ତୁ ଚାକିରି କଲେ ନାହିଁ କି ବ୍ୟବସାୟରେ ମନ ଦେଲେ ନାହିଁ । ସେ ଘରେ ରହି ଚାଷ କାମ ବୁଝିଲେ । ନିଜେ ବିଲକୁ ଯାଇ ହଳ କଲେ, ଗଛ ରୋଇଲେ । ବାଡ଼ିବଗିଚା ତାଙ୍କ ହାତରେ ହସି ଉଠିଲା । କଦଳୀ, ପଣସ, ଆମ୍ବ, ଲିଚୁ, ସପୁରୀ ବହୁତ ଫଳିଲା । ଘରେ ଗାଈ ଗୋରୁ ରଖି ସେମାନଙ୍କ ସେବାରେ ସେ ରାତିଦିନ ଲାଗି ରହିଲେ ।

ବାପାଙ୍କ ପରି ମଥୁରାମୋହନ ବଡ଼ ପରିଶ୍ରମୀ । ଅଳ୍ପ ଦିନ ଭିତରେ ତାଙ୍କର ବହୁତ ଚାଷଜମି ହୋଇଗଲା । ତାଙ୍କ ବଗିଚାର ପନିପରିବା, ଫଳ

ହାଟବଜାରରେ ବିକି ହୋଇ ଅନେକ ଟଙ୍କା ଆସିଲା । ଗାଈ ଦୁଧ; ଦୁଧରୁ ଦହି, ଛେନା, ଘିଅ ଅପର୍ଯ୍ୟାପ୍ତ ଆଦାୟ ହେଲା । ତଟକା ଜିନିଷ ଖାଇ, ସବୁବେଳେ ପରିଶ୍ରମ କରି ସେ ହେଲେ ଜଣେ ବଳିଷ୍ଠ ଯୁବକ । ସବୁ କାମକୁ ଆଗୁସାର । ରୋଗ ବଇରାଗ ଦୂରେ ଥାଉ, ସାମାନ୍ୟ କାଶ ଶର୍ଦ୍ଦି ମଧ୍ୟ ଦିନେ ହେଲେ ତାଙ୍କ ପାଖ ପଶିପାରିଲା ନାହିଁ ।

ଗ୍ରାମର ସେ ହେଲେ ମାମଲତକାର । ସମସ୍ତଙ୍କୁ ମିଳାଇ ଗ୍ରାମର ନାନା ଉନ୍ନତିକର କାମରେ ସେ ଲାଗିପଡ଼ିଲେ । ବର୍ଷାଦିନେ ଗାଁ ଦାଣ୍ଡରେ ପାଣି ଜମି ରହୁଥିଲା; କାଦୁଅ ପଚପଚ ହେଉଥିଲା । ଗାଁ ଲୋକଙ୍କ ସହିତ ମିଶି ଦାଣ୍ଡରେ ଉଚ ରାସ୍ତା କରାଇଲେ । ପଙ୍କପୂର୍ଣ୍ଣ ଦଣ୍ଡୁଆ ପୋଖରୀ ତାଙ୍କ ଉଦ୍ୟମରେ ସଫା ହେଲା । ତାଙ୍କ ଲାଗି ସମସ୍ତେ ବେଶ୍ ମିଳିମିଶି ଖୁସିରେ ଚଳିଲେ ।

ସନାତନ ଅଜା ବୁଢ଼ା ହୋଇଗଲେ । ବାଧିକା ପଡ଼ିଲେ । ବୁଝିପାରିଲେ ଯେ, ସେ ଆଉ ଅଧିକ ଦିନ ବଞ୍ଚିବେ ନାହିଁ ।

ତିନି ପୁଅଙ୍କୁ ପାଖକୁ ଡକାଇଲେ । ସେମାନଙ୍କୁ ଏକାଠି ବସାଇ କହିଲେ, "ତୁମେ ତିନିଜଣଯାକ ମୋର ଯୋଗ୍ୟ ପୁଅ । ତିନୋଟି ରତ୍ନ । ମୁଁ ତିନି ଲକ୍ଷ ଟଙ୍କା ଜମାଇ ରଖିଅଛି । ତୁମ ଭିତରେ ଯେ ପ୍ରକୃତ ରୋଜଗାରିଆ, ତାକୁ ହିଁ ସେ ଧନତକ ଦେବି । ତୁମେ ତିନିହେଁ ସେ କଥା ବିଚାର କର । କିଏ ପ୍ରକୃତ ରୋଜଗାର କରୁଅଛି, ତାହା ସିଦ୍ଧାନ୍ତ କର—ମୋତେ କୁହ ।

ବଡ଼ ପୁଅ ମନମୋହନ କହିଲେ, "କିଏ ସବୁଠାରୁ ବେଶି ଯୋଗ୍ୟ କିଏ ପ୍ରକୃତରେ ରୋଜଗାରିଆ, ତା କଅଣ ତୁମେ ବୁଝି ପାରୁ ନାହିଁ ? ଏ ରାଜ୍ୟରେ ମୋତେ କିଏ ଖାତିର୍ ନ କରେ ? ମୁଁ ତ ରାଜ୍ୟର ଶାସନ-କ୍ଷେତ୍ରରେ ଗୋଟାଏ ମେରୁଦଣ୍ଡ । ସମସ୍ତେ ମୋତେ ଭକ୍ତି କରନ୍ତି, ଭୟ କରନ୍ତି । ତେଣୁ ମୁଁ ହିଁ ତୁମ ଟଙ୍କା ପାଇବାକୁ ଉପଯୁକ୍ତ ।"

ମଦନମୋହନ କହିଲେ, "ଯେତେ ମାନ୍ୟଗଣ୍ୟ ହେଲେ ମଧ୍ୟ ବଡ଼ ଭାଇ ଚାକିରି କରିଅଛନ୍ତି—ସେ ଗୋଟାଏ ଚାକିରିଆ । ନିଜ ମନଇଚ୍ଛା ଗୋଟାଏ କିଛି କାମ ସେ କରିପାରିବେ ନାହିଁ । ମୁଁ କିନ୍ତୁ ସ୍ୱାଧୀନ । ମୋ ବୁଦ୍ଧିବଳରେ ମୁଁ ବହୁତ ଧନ ଅର୍ଜନ କରୁଅଛି । ସରକାରଙ୍କୁ ନାନାପ୍ରକାର ଚାନ୍ଦା ଭେଟା ଦେଉଅଛି । ଶହ ଶହ ଲୋକ ମୋ ପାଖରେ ଚାକିରି କରି

ପେଟ ପୋଷୁଅଛନ୍ତି । ତୁମ ଟଙ୍କା ପାଇଲେ, ଗୋଟାଏ ବଡ଼ କାରଖାନା ବସାଇବ । ସେଠାରେ ସହର ଗଢ଼ିଉଠିବ । ତା ନାମ ହେବ "ସନାତନ ନଗର ।" ଯୁଗଯୁଗକୁ ତୁମ ନାମ ରହିଥିବ ।

ଶେଷକୁ ସାନ ପୁଅ ମଧୁସୂଦନ ଆଡ଼କୁ ଅଜା ଚାହିଁଲେ । ସେ ତଳକୁ ମୁହଁ ପୋତି ବସିଥିଲା । ସେହିପରି ବସିରହି ଧୀରେଧୀରେ କହିଲା, "ତୁମ ଟଙ୍କା ମୋର ଦରକାର ନାହିଁ । ଯେ ପ୍ରକୃତ ରୋଜଗାରିଆ, ସେ ଅନ୍ୟ ଧନକୁ ଚାହିଁବ କାହିଁକି ? ମୋ ବାହୁବଳରେ ମୁଁ ଯାହା ଅର୍ଜନ କରୁଅଛି, ସେଇ ପଇସା ଖର୍ଚ୍ଚ କରିବାକୁ ମୁଁ ବାଟ ପାଉ ନାହିଁ । ବଡ଼ ଭାଇ ସରକାରୀ ଚାକିରିଆ । ମୁଁ ଯେଉଁ ଖଜଣା, ଟିକସ ଦେଉଅଛି, ସେହି ଟଙ୍କାରୁ ସେ ମାସକୁ ମାସ ଦରମା ପାଉଅଛନ୍ତି । ମୁଁ ରୋଜଗାର ନ କଲେ ଖଜଣା ଟିକସ ଦେଇପାରିବ ନାହିଁ, ତା ହେଲେ ସେ ଆଉ ଦରମା ପାଇବେ ନାହିଁ କି ତାଙ୍କର ଏ ମାନ ସମ୍ମାନ ରହିବ ନାହିଁ ।

"ମଝିଆଁ ଭାଇ ମୋର ରୋଜଗାରରେ ହିଁ ଧନୀ । ମୁଁ ବର୍ଷକଯାକ ଖରା, ବର୍ଷା, ଶୀତ ନ ମାନି ବିଲରେ କାମ କରେ । ସେଥିରୁ ଯେଉଁ ଧାନ, ମୁଗ, ବିରି, କୋଳଥ ଉତ୍ପାଦନ କରେ, ମଝିଆଁ ଭାଇ ତାକୁ ଏ ସହରରୁ ସେ ସହରକୁ ପଠାନ୍ତି । ସେଥିରୁ ସେ ପଇସା ରୋଜଗାର କରନ୍ତି । ମୁଁ ଧାନଚାଉଳ ନ ଦେଲେ, ତାଙ୍କ ବ୍ୟବସାୟ ଚାଲିବ ନାହିଁ, ରୋଜଗାର ବନ୍ଦ ହୋଇଯିବ ।

"ସେ ଦୁଇ ଭାଇ ବହୁତ ଟଙ୍କା ପାଉଅଛନ୍ତି ସତ, ମାତ୍ର ତାହା ଅନ୍ୟର ରୋଜଗାର । ଟଙ୍କା ତ ସେମାନେ ତିଆରି କରୁ ନାହାନ୍ତି । ମାତ୍ର ମୁଁ ଯାହା ରୋଜଗାର କରୁଅଛି, ତାହା ମୋ ବାହୁବଳରେ, ନିଜ ପରିଶ୍ରମରେ । ମୋର ରୋଜଗାରରେ ହିଁ ସେମାନେ ଚଳୁଅଛନ୍ତି, ଅନ୍ୟ ଲୋକେ ବି ଚଳୁଅଛନ୍ତି ।

"ପ୍ରକୃତ ରୋଜଗାରିଆ କିଏ, ଏଇଥିରୁ ତୁମେ ବିଚାର କର ।"

ବୁଢ଼ା ତିନି ପୁଅଙ୍କ ମୁହଁକୁ ଚାହିଁଲେ । କହିଲେ, "ତୁମେ ତିନିଜଣଯାକ ମିଶି ଏ ସମସ୍ୟାର ସମାଧାନ କର ।

ଆଚ୍ଛା କହିଲ ଦେଖି, କିଏ ପ୍ରକୃତରେ ରୋଜଗାରିଆ ? କିଏ ସବୁଠାରୁ ବେଶି ଯୋଗ୍ୟ ?

---

# ସାଇମନ

ପିଲାଦିନରୁ ଦୁହେଁ ସାଙ୍ଗ—ସାଇମନ ଓ ଗ୍ରେଗରୀ । ଏକାଠି ରହନ୍ତି, ଏକାଠି ଖାଆନ୍ତି, ଏକାଠି ଶୁଅନ୍ତି । ସାଙ୍ଗ ହୋଇ ହାଟ ବଜାରକୁ ଯାଆନ୍ତି ।

ସାଇମନକୁ ଯେତେବେଳେ ପଞ୍ଚ ବର୍ଷ ବୟସ, ତା ଜନ୍ମଦିନ ଉତ୍ସବରେ ବାପା ତାକୁ ଏଇ ଗ୍ରେଗରୀକୁ ଉପହାର ଦେଇଥିଲେ । ସେଇଦିନୁ ଦୁହେଁ ସାଙ୍ଗସାଥୀ ହୋଇ ଖେଳବୁଲି ବଢ଼ି ଆସୁଅଛନ୍ତି ।

ଗ୍ରେଗରୀ ମଣିଷ ନୁହେଁ—ଗୋଟିଏ ଗଧ ।

ବହୁତ ଦିନ କଟିଗଲା । ବାପା ମରିଗଲେ । ସାଇମନ ହେଲା ଘରର ମାଲିକ ।

ଗରିବ ଚାଷୀଘରର ପିଲା ସେ । ବାପାଙ୍କ ପରି ବାଡ଼ି ବଗିଚାରେ ପନିପରିବା କରେ । ଗ୍ରେଗରୀ ପିଠିରେ ଲଦି ତାକୁ ହାଟକୁ ନିଏ । ସେଠାରେ ବିକି ଯାହା ପଇସା ପାଏ, ସେଥିରେ କୌଣସିମତେ ଦିନ କାଟୁଥାଏ ।

ଘରେ ଆଉ କେହି ନାହାନ୍ତି । ସାଇମନ ଆଉ ଗ୍ରେଗରୀ । ଯାହା ରୋଜଗାର ହୁଏ, ସେ ସବୁ ଖାଇବାରେ ଖର୍ଚ୍ଚ ହୋଇଯାଏ । ଖାଇ ଖାଇ ଗ୍ରେଗରୀ ଖୁବ୍ ମୋଟା ହୋଇଗଲା; ବଳୁଆ ମଧ୍ୟ । ତାର ଗୋଲଗାଲ ସୁନ୍ଦର ଚେହେରା ଦେଖି ଯେ କୌଣସି ଲୋକ ଲୋଭ କରିବ ।

ଦିନେ ସାଇମନ ହାଟରୁ ଫେରୁଥିଲା । ପରିବା ବିକ୍ରିରେ ବେଶ୍ ଦୁଇ ପଇସା ମିଳିଛି । ନିଜ ପାଇଁ ଭଲ ମାଂସ ଆଉ ଗ୍ରେଗରୀ ପାଇଁ ବହୁତ ଗାଜର, ମୂଳା କିଣିଅଛି । ରାସ୍ତାରେ ମନବୋଧ କରି ନିଜେ ଖାଇବ, ଗ୍ରେଗରୀକୁ ଖୁଆଇବ ।

ମନ ଭାରି ଖୁସି । ବାଟ ବୁଲୁବୁଲୁ ଗୁଣୁଗୁଣୁ ସ୍ୱରରେ ଗୀତ ଗାଉଥାଏ । ଗ୍ରେଗରୀ ବେକରେ ବନ୍ଧା ହୋଇଥିବା ଦଉଡ଼ିର ଶେଷ ମୁଣ୍ଡ ଥାଏ ତା ହାତରେ । ପଛେପଛେ ଗ୍ରେଗରୀ ଚାଲିଥାଏ ।

ବାଟରେ ଦୁଇ ଜଣ ଲୋକ ତାକୁ ଦେଖିଲେ । ସେମାନଙ୍କ ଭିତରେ କଅଣ ଚୁପ୍‌ଚାପ କଥାବାର୍ତ୍ତା ହୋଇଗଲା । ହଠାତ୍ ତାଙ୍କ ଭିତରୁ ଜଣେ ଆସି ଗ୍ରେଗରୀ ବେକରୁ ଦଉଡ଼ା ଫାଶ ଫିଟାଇଦେଲା । ସେଇ ଫାସ ନିଜ ବେକରେ ଗଳାଇ ସାଇମନ ପଛେପଛେ ଚାଲିଲା ।

ଅନ୍ୟ ଲୋକଟି ଗ୍ରେଗରୀକୁ ଧରି ଚୁପ୍‌ଚାପ୍ ସେଠାରୁ ଚାଲିଗଲା ।

ସାଇମନର ତ କୌଣସି ଆଡ଼କୁ ନଜର ନାହିଁ । ଖୁସି ମନରେ ସେ ଘରମୁହାଁ ଚାଲିଅଛି । ହଠାତ୍ ହାତରେ ଧରିଥିବା ଦଉଡ଼ା ଟାଣି ହୋଇଗଲା । ସାଇମନ ଭାବିଲା, ଚର୍ଧଟା ଠିଆ ହୋଇଗଲା ବୋଧହୁଏ । କାହିଁକି ଠିଆ ହେଲା ?

ସେ ପଛକୁ ଚାହିଁଦେଲା—ଆରେ ଗ୍ରେଗରୀ କାହିଁ ? ଗ୍ରେଗରୀ ବଦଳରେ ଗୋଟିଏ ଅଚହ୍ନା ମଣିଷ ଯେ ଦଉଡ଼ାରେ ବନ୍ଧା ହୋଇଅଛି !

ସାଇମନ ଆଶ୍ଚର୍ଯ୍ୟ ହୋଇଗଲା । ପଚାରିଲା, "ତୁ କିଏରେ ? ମୋ ଗ୍ରେଗରୀ ଗଲା କୁଆଡ଼େ ?"

ଲୋକଟି ଉତ୍ତର ଦେଲା, "ମୁଁ ପରା ତୁମ ଗ୍ରେଗରୀ । ଚିହ୍ନି ପାରୁ ନାହିଁ ?"

"ମୋ ଗ୍ରେଗରୀ ତୁ ନୋହୁଁ । ତାର ଚାରିଟା ପାଦ, ଗୋଟାଏ ଲାଙ୍ଗୁଡ଼ ଥିଲା । ତା ମୁହଁଟା ଲମ୍ବା । ତୋର ଯେ ଦୁଇଟା ଗୋଡ଼, ଲାଞ୍ଜ ନାହିଁ; ମୁହଁ ଗୋଲ । ତୁ ଗ୍ରେଗରୀ ହେଲୁ କେମିତି ? ତୁ ତ ଗୋଟାଏ ମଣିଷ ପରି ଦିଶୁଛୁ ।"—ସାଇମନ ଆଶ୍ଚର୍ଯ୍ୟ ହୋଇ ଏତେ କଥା କହିଗଲା ।

ଲୋକଟି ଜବାବ ଦେଲା—"ମୁଁ ତ ମଣିଷ । ପିଲାଦିନେ ବଡ଼ ଦୁଷ୍ଟ ଥିଲି । ମାଆଙ୍କ କଥା ମାନୁ ନ ଥିଲି । ଗରିବ ଦୁଃଖୀ ଲୋକଟିଏ ଦେଖିଲେ ଗାଳି ଦେଉଥିଲି । ମୋ ଦୁଷ୍ଟପଣିଆ ଦେଖି ମାଆ ମୋତେ ଜଣେ ବାବାଜୀଙ୍କ ପାଖକୁ ନେଇଗଲେ । ସେ ମନ୍ତ୍ର ପଢ଼ି ମୋତେ ଗୋଟାଏ ଗଧ କରିଦେଲେ । କହିଲେ, "ଯେତେବେଳେ ତୁ ଭଲ ପିଲା ହେବୁ, ପାଠପଢ଼ାରେ ମନ ଦେବୁ, ସେତେବେଳେ ତୁ ପୁଣି ମଣିଷ ହୋଇଯିବୁ ।"

ସେ ପୁଣି କହିଲା; "ଆଜି ତୁମ ପଛେ ପଛେ ହାଟରୁ ଫେରୁ ଫେରୁ ସେ ପିଲାଦିନ କଥା ମୋର ମନେ ପଡ଼ିଗଲା । ମାଆଙ୍କୁ ଦେଖିବାକୁ ମନ ବ୍ୟାକୁଳ ହେଲା । ମୋ ପିଠିରେ ତୁମେ ଯେଉଁ ଜିନିଷ ଲଦିଥିଲ, ତାକୁ ଗରିବ ଲୋକଙ୍କୁ ବାଣ୍ଟିଦେଲି । ଭାବିଲି, ଏଣିକି ଭଲପିଲା ହେବି; ମନ ଦେଇ ପାଠ ପଢ଼ିବି । ଏଇ କଥା ଭାବିଲାକ୍ଷଣି ମୋ ଗଧ ରୂପ ଚାଲିଗଲା । ମୁଁ ପୁଣି ହୋଇଗଲି ସେଇ ପୂର୍ବର ମଣିଷ । ଯାଉଛି ମୋ ମାଆଙ୍କ ପାଖକୁ । ସେ ମୋତେ ନ ଦେଖି କେତେ ଝୁରି ହେଉଥିବେ ।"

ଏତକ କହିଦେଇ ଲୋକଟି ନିଜ ବେକରୁ ଘଣ୍ଟିଟା ଫିଟାଇ ଦେଲା । ସାଇମନ ବୋକାଙ୍କ ପରି ଚାହିଁରହିଛି, ଉଆଁ ଟାଏ ମାରି ସେ ଲୋକଟା କ୍ଷଣକ ମଧ୍ୟରେ କୁଆଡ଼େ ଅଦୃଶ୍ୟ ହୋଇଗଲା । ସାଇମନ ବଡ଼ ମନଦୁଃଖରେ ଏକାକୀ ଘରକୁ ଫେରିଲା ।

ଗଧଟିଏ ନ ହେଲେ ନ ଚଳେ । ପର ଦିନ ସାଇମନ ପୁଣି ହାଟକୁ ଗଲା ଗୋଟିଏ ଗଧ କିଣିବାକୁ । ଗ୍ରେଗରି କଥା ଭାବିଭାବି ମନରେ ବଡ଼ କଷ୍ଟ ହେଉଥାଏ । ଏତେ ଦିନର ସାଙ୍ଗ; ତାକୁ କଣ ଭୁଲି ହୁଏ ?

ଗଧହାଟରେ ପହଞ୍ଚି ସାଇମନ ଦେଖିଲା, ଆଉ କେତେଟା ଗଧ ସହିତ ତା ଗ୍ରେଗରି ବି ବିକା ହେବା ପାଇଁ ବନ୍ଧା ହୋଇଅଛି । ସାଇମନ ତା ପାଖକୁ ଗଲା । ପିଠି ଆଉଁସି ଦେଲା । କାନ ପାଖରେ ଫୁସ୍‌ଫୁସ୍ କରି କହିଲା, "ପୁଣି ତୁ କଅଣ ଅମାନିଆ ହେଲୁ, ମାଆଙ୍କର ଅବାଧ୍ୟ ହେଲୁ ? ସେଇଥି ପାଇଁ ବାବାଜୀ ବୋଧହୁଏ ତୋତେ ଆଉ ଥରେ ଗଧ କରିଦେଲେ ।

ଗ୍ରେଗରି ପୁରୁଣା ମାଲିକକୁ ପାଖରେ ପାଇ ମୁଣ୍ଡ ହଲାଇଲା, ତା ଦେହରେ ଘଷି ହେଲା ।

ସାଇମନ ତାକୁ ଆଉ ଥରେ ଗେଲ କରି କହିଲା, "ତୋତେ କିଣିବାକୁ ଭାରି ଇଚ୍ଛା ହେଉଅଛି । କିନ୍ତୁ କଅଣ କରିବ ? ତୁ ଯେ କୌଣସି ମୁହୂର୍ତ୍ତରେ ପୁଣି ମଣିଷ ହୋଇଯିବୁ । ମୋର ତ ମଣିଷ ଦରକାର ନାହିଁ— ଗୋଟିଏ ଗଧ କେବଳ ଦରକାର । ଥରକୁ ଥର ଗଧ କିଣିବାକୁ ମୁଁ ଏତେ ପଇସା ପାଇବି କୁଆଡୁ ? ତୁ ତ ମୋ ପାଖରେ ଥିଲାବେଳେ ଖୁବ ଅନୁଗତ ଥିଲୁ । ମନ ଦେଇ କାମ କରୁଥିଲୁ । ମାଆଙ୍କ ପାଖରେ ଏମିତ ଅମାନିଆ ହେଉଛୁ କାହିଁକି ?"

ସାଇମନ ଆଉ ଗୋଟିଏ ଗଧ କିଣି ଘରକୁ ଫେରିଲା ।

ସେ ଏବେ ମଧ୍ୟ ବିଲରେ କାମ କଲାବେଳେ, ହାଟକୁ ଗଲାବେଳେ କି ଗଧକୁ ଖାଇବାକୁ ଦେଲାବେଳେ ତା ଗ୍ରେଗରି କଥା ଭାବେ । ମନେମନେ ଝୁରି ହୁଏ । ଥରେଥରେ ଅଜାଣତରେ ଗ୍ରେଗରି ପାଇଁ ତା ଆଖିରୁ ଟୋପାଟୋପା ଲୁହ ଗଡ଼ିପଡ଼େ ।

ଏବେ ମଧ୍ୟ ତାର ଦୃଢ଼ ଧାରଣା, ତା ଗ୍ରେଗରି ପ୍ରକୃତରେ ଗୋଟାଏ ମଣିଷ ଥିଲା ।

(ରୁମାନିଆ ଦେଶର କାହାଣୀ)

———

# ଜୁଆଇଁ ଭୋଜନ

ଦିନେ ହଠାତ୍ ଦେଖାଗଲା, ନିଧି ସ୍କୁଲକୁ ଆସିବା ବନ୍ଦ କରି ଦେଇଛି । ନିଧି ଅର୍ଥାତ୍ ନିଧିରାମ ଦାସ । ଆମ ଗାଁର ଶେଷ ମୁଣ୍ଡରେ ତା ଘର । ସେ ମୋ କ୍ଲାସ ସାଥୀ । ଛଅବର୍ଷ ହେଲା ସାଙ୍ଗ ହୋଇ ଆମେ ଦୁହେଁ ପଢ଼ିଆସିଛୁ । ଗାଁ ଚାଟଶାଳୀରୁ ମାଇନର ସ୍କୁଲ ପର୍ଯ୍ୟନ୍ତ ଆସିଲୁଣି । କ୍ଲାସରେ ଭଲ ନ ପଢ଼ିଲେ ମଧ୍ୟ ନିଧି ଖୁବ୍ ଧୀରସ୍ଥିର, ଆଜ୍ଞା ମନଯୋଗୀ । କୌଣସି କାମର ଦାୟିତ୍ୱ ତା ହାତରେ ପଡ଼ିଲେ, ସେ କୌଣସିମତେ ସେ ତାହା କରିବ । ତେଣୁ ତାକୁ ସମସ୍ତେ ସୁଖ ପାଆନ୍ତି । ଶିକ୍ଷକମାନେ ସ୍ନେହ କରନ୍ତି ।

ନିଧିର ଗୋଟାଏ ବିଶେଷ ଗୁଣ ଥିଲା । ସେ ଖାଏ ଖୁବ୍ ବେଶି । ସ୍କୁଲରେ ଗଣେଶ, ସରସ୍ୱତୀ ପୂଜା ହେଲେ ତାର ଯେତିକ ଆନନ୍ଦ ହୁଏ, ଅନ୍ୟ ପିଲାଏ ମଧ୍ୟ ସେତିକ ଖୁସି ହୁଅନ୍ତି । ସେ ମନବୋଧ କରି ଖାଇବ ବୋଲି ନାଚିଉଠେ । ଗୋଟିଏ ପିଲା ଅନ୍ତତଃ ପାଞ୍ଚଜଣଙ୍କ ଖାଦ୍ୟ ଖାଇବ —ଏହା ଦେଖି ଆମେ କଉତୁକ କରିବୁ ବୋଲି ଖୁସି ହେଉଁ ।

ସାଙ୍ଗସାଥୀମାନେ ତା ନାମ ଦେଇଥାନ୍ତି ପେଟୁ ରାମ । ଏ ନାମରେ ଡାକିଲେ ସେ ବିରକ୍ତ ହୁଏ ନାହିଁ—ବରଂ ଖୁସି ହୁଏ ।

ବହୁତ ଥର ବହୁ ପିଲାଙ୍କ ସହିତ ଖାଇବା ପ୍ରତିଯୋଗିତାରେ ସେ ଜିଦ୍ ପକାଇଛି । ସବୁ ଥର ଅନ୍ୟ ପିଲାମାନେ ହାରି ତା ପାଖରେ ମୁଣ୍ଡ ନୁଆଇଁଛନ୍ତି । ତା ଖାଇବା ପରିମାଣ ଦେଖି ମାଷ୍ଟରମାନେ ମଧ୍ୟ ଆଶ୍ଚର୍ଯ୍ୟ ହୋଇଥାଆନ୍ତି; ମୁରୁକି ହସା ଦେଇ ମନେମନେ ପ୍ରଶଂସା କରିଥାଆନ୍ତି ।

ନିଧି ଘରେ ବୁଢ଼ା ମାଆ ବ୍ୟତୀତ ଆଉ କେହି ନାହାନ୍ତି । ଗରିବ ଲୋକ । ବିଲୁଆ ପରଘରେ ମୂଲ ଲାଗି ଯାହା କିଛି ପାଏ, ସେଥିରୁ ବାରପଣ ନିଧି ପେଟରେ ପୂରାଇଥାଏ । ନିଧିକୁ କାହା ଘରେ ଚାକର ରଖିବ ବୋଲି ସେ ଠିକ୍ କରିସାରିଥିଲା । କିନ୍ତୁ ନିଧିର ଜିଦ୍, ଆମ ମାଷ୍ଟରମାନଙ୍କ ଉପଦେଶ ଶୁଣି ତାକୁ ମାଇନର ସ୍କୁଲକୁ ପଢିବାକୁ ପଠାଇଅଛି । ସ୍କୁଲ ଦରମା ଛାଡ଼; କାଗଜପତ୍ର, ବହି ଉପରୁ ମିଳେ । କେବଳ ନିଧିକୁ ମୁଠାଏ ପେଟ ପୂରାଇ ଖାଇବାକୁ ଦେବାପାଇଁ ବୁଢ଼ୀ ନାକେଦମ୍ ହୋଇଯାଏ ।

ଶେଷକୁ ବୁଡ଼ୀର ଜିଦ୍ ହିଁ ରହିଲା । ନିଧି ସ୍କୁଲକୁ ଆସିବା ବନ୍ଦ କରିଦେଲା । ଶୁଣ୍‌ଶୁଣ୍ କଅଣ ନା, ନିଧିର ବାହାଘର ହୋଇଗଲାଣି । ଶାସ୍ତ୍ରରେ ଅଛି, "ଢୋଲ ଯାଏ ଗୀତ, ବାହାଯାଏ ପାଠ" । ନିଧି ବାହା ହେଲା, ଆଉ ପାଠ ପଢ଼ିବ କଅଣ ? ତେଣୁ ଆସନ୍ତା ପରୀକ୍ଷାରୁ ସେ ଛାଡ଼ି ପାଇଗଲା ।

ନିଧିର ବାହାଘର ହୋଇଛି ବହୁତ ଦୂର ଗୋଟାଏ ଗାଁରେ । କପଟ ଧୋଇଆ ଅଞ୍ଚଳ । ଶ୍ୱଶୁରଘର ଟିକିଏ ଥିଲାବାଲା ଲୋକ । ଲୋକମାନେ କଲିକତାରେ କେଉଁ କଳଘରେ କାମ କରନ୍ତି । ବର୍ଷେ ଛଅ ମାସ ଗଲେ ନିଧିକୁ ମଧ୍ୟ ସେଠାକୁ ସାଙ୍ଗରେ ନେଇଯିବେ ବୋଲି ଠିକ୍ ହୋଇଛି ।

ଗହ୍ମା ପୂର୍ଣ୍ଣିମାରେ ଜ୍ୱାଇଁକୁ ବରଣ କରିନେବା ପାଇଁ ଲୋକ ଆସିଗଲେ । ନିଧି ଖୁବ୍ ଆନନ୍ଦରେ ସଜବାଜ ହୋଇ ବାହାରି ପଡ଼ିଲା । ଶ୍ୱଶୁର ଘରକୁ ଯିବ, ପୁଣି ପାଠୁଆ ଜ୍ୱାଇଁ—ସେମିତି ଆଡ଼ମ୍ବର ହେବା ତ ଦରକାର ।

ଘରୁ ବାହାରିବା ଆଗରୁ ନିଧିଙ୍କୁ ଡାକି ନେଇ ମା କେତେକ ସଗୁଣା ଶିଖାଇଦେଲେ । "ଶ୍ୱଶୁର ଘର ସେ । ସେଠି ମାନ ମର୍ଯ୍ୟାଦା ରଖି ଚାଲିବୁ । କାହାରି ସଙ୍ଗରେ ଠୋ ଠା କଥାବାର୍ତ୍ତା କରିବୁ ନାହିଁ । ଦ୍ରୁମ୍‌ଦ୍ରୁମ୍ ହୋଇ ଦଉଡ଼ିବୁ ନାହିଁ । ଯାହା ଖାଇବାକୁ ଦେବେ, ସେଥିରୁ ଅଧେ ଖାଇ ଅଧେ ଛାଡ଼ିଦେଇ ଆସିବୁ । ସବୁ ଖାଇଦେଲେ ପେଟୁ ବୋଲି କହିବେ, ନିନ୍ଦା କରିବେ । ଜଗିରଖି ଚାଲିବୁ—ଯେପରି ତୋର କି ମୋର କିମ୍ବା ଆମ ଏ ଗାଁର ନିନ୍ଦା ନ ହୁଏ ।"

ଗୋଟି ଗୋଟି ସବୁ କଥା ମନେ ରଖି ନିଧି ବାହାରି ପଡ଼ିଲା ଶ୍ୱଶୁର ଘରକୁ । ମାଆ ଶିଖାଇଥିବା ଆଉ କୌଣସି କଥା ତାର ମନେ ରହିଲା ନାହିଁ । କେବଳ ମନଭିତରେ ଘାଣ୍ଟିଚକଟି ହେଲା ଖାଇବା କଥାଟି । ଯାହା ଦେବେ ସେଥିରୁ ଅଧେ ଖାଇବୁ—ଏଇଟା ତାକୁ ବଡ଼ ଅଡୁଆ ବୋଧ ହେଲା ।

ସଞ୍ଜବେଳକୁ ଯାଇ ଶ୍ୱଶୁରଘରେ ପହଞ୍ଚିଲା । ଆଗରୁ ସେ ଗ୍ରାମର ସବୁ ଟୋକା, ଭେଣ୍ଡିଆ, ବୁଢ଼ାବୁଢ଼ୀ ମୁରବି ତାକୁ ଅପେକ୍ଷା କରି ରହିଥିଲେ । ଖୁବ ଆଦର କରି ଘରକୁ ନେଇଗଲେ । ଇଂରାଜୀ ପାଠୁଆ ଜ୍ୱାଇଁ । ପୁଣି ସହରର ପାଖ ଗ୍ରାମରୁ ଆସିଛନ୍ତି । ତାଙ୍କୁ କପଟ ଧୋଇଆ ଅଞ୍ଚଳରେ ଆଦର ନ କରିବ କିଏ ?

ନିଧି ମଧ୍ୟ ସମସ୍ତଙ୍କୁ ମୁଣ୍ଡିଆ ମାରି, ନମସ୍କାର କରି ମାନ୍ୟ କଲା । ପ୍ରକୃତରେ ସେ ଯେ ପାଠ ପଢ଼ି ଖୁବ୍ ଭଦ୍ର ହୋଇଅଛି, ଏହା ଦେଖି ସମସ୍ତେ ଖୁସି ହୋଇଗଲେ ।

ବାଟରେ ତାକୁ ଘେରି ବହୁତ ଲୋକ ବସି ରହିଲେ । ଆଜକାଲିର କଥା—ନିଧି ଯାହା ସବୁ ବହିରୁ ପଢ଼ିଥିଲା, ଖବରକାଗଜରୁ ଜାଣିଥିଲା, ସ୍ୟାର୍, ତା ମୁହଁରୁ ଶୁଣିଥିଲା, ସେ ସବୁ ବୁଝାଇ କହିବାରେ ଲାଗିଥାଏ । ତା କଥା କେହି କେହି ବୁଝିଲେ, କେହି ବା କିଛି ବୁଝିପାରିଲେ ନାହିଁ । କିନ୍ତୁ ସମସ୍ତେ ନିଧିର ଏ ବିଦ୍ୟାବୁଦ୍ଧି ଦେଖି ଖୁସି ହେଲେ । ସେ ଏତେ କଥା ଜାଣିଥିବାରୁ ଖୁବ୍ ପ୍ରଶଂସା କଲେ । ପୁରୁଣା କାଳିଆ ବୁଢ଼ାବୁଢ଼ୀ ଲୋକେ ଆବା କାବା ହୋଇ ତା ମୁହଁକୁ ଚାହିଁ ରହିଲେ ।

ନିଧି ମୁହଁରେ ନାନା କଥା କହି ନିଜ ବିଦ୍ୟା ସିନା ଜାହିର କରୁଥାଏ, ହେଲେ ପେଟ ଭିତର ଭୋକରେ ହୁ ହୁ ଜଳୁଥାଏ । ଦିନ ବା'ପହରରେ ଯାଇ ଘରେ ଗଣ୍ଡାଏ କଅଣ ଖାଇ ଆସିଥିଲା । ଏତେ ବାଟ ଚାଲିଚାଲି ଆସିବାରୁ ସେ ସବୁ କେତେବେଳୁ ହଜମ ହୋଇଗଲାଣି । ଘର ହୋଇଥିଲେ, ଏତେ ବେଳକୁ ଅନ୍ତତଃ ଦୁଇ ଥରତ ହୋଇ ସାରନ୍ତାଣି । ମାତ୍ର ଏ ତ ଘର ନୁହେଁ—ଶଶୁର ଘର । ଭୋକ ଉପାସ ସହି ମୁହଁ ମାଡ଼ି ପଡ଼ି ରହିବା କଥା । ନ ହେଲେ ମାନମର୍ଯ୍ୟାଦା ହାନି ହେବ, ନିନ୍ଦା ହେବ ।

କେତେବେଳେ ସଞ୍ଜ ଠା ପିଢ଼ା କରାଗଲା । ନିଧି ଦେହରେ ଜୀବନ ପଶିଲା ।

ଜୁଆଇଁ ବରଣ; ତେଣୁ ସାହି ଭାଇ ଦଶପନ୍ଦର ଜଣ ଖାଇବାର କଥା । ସମସ୍ତଙ୍କ ପାଇଁ ଏକାଠି ପତର ପଡ଼ିଲା ।

ନିଧି ଯାଇ ନିଜ ସ୍ଥାନରେ ବସିଲା । ଅନ୍ୟମାନେ ଗୋଟିଏ ଗୋଟିଏ ପତର ଆଦରି ବସିଗଲେ । ଭାତ, ଡାଲି, ଖିରି ଛଅ ପ୍ରକାର ତରକାରି, କେତେ ରକମ ପିଠା ପତରରେ ବଢ଼ାଗଲା । ନିଧି ମନ ଭାରି ଖୁସ୍ । ଚଟାପଟ୍ ସବୁଯାକ ସଙ୍ଗେସଙ୍ଗେ ପେଟକୁ ପକାଇଦେବାକୁ ମନ ହେଉଅଛି । ମାତ୍ର ଶଶୁର ଘର । ପାଖରେ ଅନ୍ୟମାନେ ବସିଅଛନ୍ତି । ଟାଉକା ଭଳିଆ ଖାଇଲେ ହସିବେ ଯେ ।

ମାଆ କହିଅଛି, ଯାହା ଦେବେ, ସେଥିରୁ ଅଧେ ଖାଇବୁ । ଅଧେ ପତରରେ ଛାଡ଼ି ଆସିବୁ । ସେହି କଥା ମନେ ପକାଇ ସେ ଜଗିରଖି ଖାଉଥାଏ । ପଛରେ ଭାତ ଆସିଲା; ଡାଲି, ତରକାରୀ ଆସିଲା, ପିଠାପଣା ଆସିଲା । ସମସ୍ତଙ୍କ ପତରରେ ଦିଆଗଲା । କିନ୍ତୁ ଜୁଆଁଇଙ୍କ ପତରରେ ସବୁ ଅଧାଅଧି ରହିଅଛି । ଆଉ ଦେବେ କାହିଁକି ? ନଷ୍ଟ ହେବ ଯେ ।

ବଧି ମନେମନେ ଭାବୁଥାଏ, ଆଉ ଦେଲେ ସିନା ତାକୁ ପତରରେ ରଖି ଏତିକ ଖାଇ ଦିଅନ୍ତି । ଆଉ ତ ଦେଉ ନାହାନ୍ତି । ପତରରେ ଅଧେ ଛାଡ଼ିବାର କଥା । ଆଉ ଖାଇବ କପରି ? ଖାଇଦେଲେ ପତରରେ ରହିବ ଆଉ କଅଣ ?

ତାର ସବୁତକ ଖାଇଦେବାକୁ ଭାରି ଇଚ୍ଛା ହେଉଥାଏ । ପେଟ ମୋଟେ ଅଧା ହୋଇ ନାହିଁ । ହାତ ଖଜବଜ ହେଉଅଛି, ପାଟି ଆଁ ହୋଇ ଯାଉଛି । କିନ୍ତୁ ସେ ଖାଉ ନାହିଁ । ଶଶୁରଘର ଯେ । ପତର ଖାଲି କରିଦେବ କପରି ?

ଶେଷରେ ସମସ୍ତଙ୍କ ପତର ଖାଲି ହୋଇଗଲା । ହାକୁଟି ମାରି ସମସ୍ତେ ଉଠିଲେ । ଜଆଁଇ ତ ଆଗରୁ ହାତ ଟେକି ବସିଥାଆନ୍ତି । ସମସ୍ତଙ୍କ ସାଙ୍ଗରେ ସେ ଉଠି ହାତମୁହଁ ଧୋଇଲେ ।

ମୂରବୀମାନେ ଜୁଆଁଇଙ୍କ ପତର ଦେଖି କହିଲେ – ଜୁଆଁଇପିଲାଟି ବଡ଼ ସୁକୁମାର, ଅଳ୍ପ ଆହାରୀ । ପତରରେ ଏତେଗୁଡ଼ାଏ ଦେଲା କାହିଁକି ? ଆଜିକାଲି ମହର୍ଗ ଦିନରେ ଅକାରଣରେ ନଷ୍ଟ ହେଲା ସିନା !

ଶଶୁର ଘରେ ସମସ୍ତେ ଜାଣିଲେ, ଜୁଆଁଇ ଅଳ୍ପ ଖାଆନ୍ତି । ତାଙ୍କ ପତରରେ ବେଶି ଦେଲେ ସବୁ ନଷ୍ଟ ହେବ । ପରଦିନ ଯେତେବେଳେ ଖାଇବାକୁ ଦିଆଗଲା, ସେତେବେଳେ ଭାତ, ଡାଲି, ତରକାରୀ—ସବୁ ଅଧା ଅଧା ଦେଲେ ।

ଭାତ ଥାଳି ଦେଖି ବଧିର ଅନ୍ତରାତ୍ମା ଜଳିଗଲା । କାଲି ଅଧା ଉପାସ, ଆଜି ପୁଣି ଦିଆଯାଇଛି ଏତେ ଅଳ୍ପ । ଏଥିରୁ ସେ ଖାଇବ କେତେ, ପତରରେ ରଖିପିବ କେତେ ?

ତେବେ ଶଶୁର ଘର ତ । ମାଆ କହିଛି, ଅଧେ ରଖିବାକୁ ହେବ । ତେଣୁ ସେ ଥାଳିରୁ ଅଧେ ଭାତ ଖାଇଲା, ଅଧେ ରଖିଲା । ଡାଲି, ତରକାରୀ,

ଭଜା—ସବୁଥିରୁ ମଧ୍ୟ ଅଧେଅଧେ ଗୁଡ଼ଦେଇ ଉଠିଲା । ଏଣେ ଶୋକରେ ପେଟ ଯେ କେଁ କେଁ ହେଉଅଛି, ଏ କଥା ଏକା ତା ବ୍ୟତୀତ ଆଉ ଜାଣିବ କିଏ ?

ରାତି ଅବସ୍ଥା ଆହୁରି ଖରାପ । ଶାଶୁ ଦେଖିଲେ, ସକାଳେ ଯେତିକି ଭାତ ବଢ଼ା ଯାଇଥିଲା, ଜ୍ୱାଇଁ ସେଥିରୁ ଅଧେ ଗୁଡ଼ି ଯାଇଥିଲେ । ତେଣୁ ସେ ସକାଳ ଅପେକ୍ଷା ମଧ୍ୟ କମ୍ ଭାତ ବାଢ଼ିଲେ ।

ନିଧିର ଆଖି ଖୋସି ହୋଇଗଲା । ମନ ହେଲା, ଭାତ, ତରକାରୀ ଗୋଡ଼ରେ ଫିଙ୍ଗିଦେଇ ମାଆ ପାଖକୁ ପଳାଇ ଯାଆନ୍ତା । କିନ୍ତୁ ଶଶୁର ଘର ଲୋକେ କହିବେ କଅଣ ?

ମନର ରାଗ ମନରେ ମାରି ସେ ଖାଇ ବସିଲା । ଜ୍ୱାଇଁ ମର୍ଯ୍ୟାଦା ରଖିବାକୁ ଯାଇ ସେଥିରୁ ମଧ୍ୟ ଅଧେ ଥାଳରେ ଗୁଡ଼ିଦେଇ ଆସିଲା । ଯାହା ଖାଇଲା, ସେଥିରେ ପେଟ କୋଣେ ସୁଦ୍ଧା ପୂରିଲା ନାହିଁ ।

ରାତିରେ ସମସ୍ତେ ନିଜ ନିଜ ଘରେ ଶୋଇଲେ । ନିଧି ମଧ୍ୟ ତାକୁ ଦିଆଯାଇଥିବା ଦାଣ୍ଡ ଘରେ ଶୋଇଲା । ଧୋବ ଫରଫର ନରମ ବିଛଣା; ସୁନ୍ଦର ତକିଆ । ତଥାପି ତାକୁ ନିଦ ହେଲା ନାହିଁ । ଦୁଇ ଦିନ ହେଲା ଉପାସ; ପେଟ ହୁ ହୁ ଜଳୁଛି । ଏଥିରେ ନିଦ ହେବ ବା କିପରି ?

ରାତି ଅଧ ହେଲା । ଘରର ସମସ୍ତେ ନିଜନିଜ ଘର ଭିତରେ ଦୁଆର କିଳି ଶୋଇଛନ୍ତି ଗାଢ଼ ନିଦରେ । ଘୁଙ୍ଗୁଡ଼ି ମାରୁଛନ୍ତି ।

ନିଧି ଆଖିକୁ ନିଦ ଆସୁ ନାହିଁ । ବିଛଣାରେ ଶୋଇ ଏପଟ ସେପଟ ହେଉଅଛି । ପେଟକୁ ହାତରେ ଚିପୁଛି; ତକିଆକୁ ପେଟରେ ଯାକି ଶୋଉଛି । ଶେଷକୁ ଆଉ ବେଗ ସମ୍ଭାଳିପାରିଲା ନାହିଁ ।

କବାଟ ଫିଟାଇ ଦୁଆରକୁ ଆସିଲା । ଇଚ୍ଛା, କେଉଁଠି ଖାଇବା ଜିନିଷ କଅଣ ଥିବ; ହାତରେ ପାଇଲେ ଖାଇବ ।

ଅନ୍ଧାରରେ ଭଲ ଦିଶୁ ନ ଥାଏ । ତଥାପି ସେ ଜାଣି ପାରିଲା, ପିଣ୍ଡାରେ କେଉଁଠା ହାଣ୍ଡି ଉଗୁଡ଼ା ହୋଇ ରହିଅଛି । ତା ପଛରେ କୁକୁଡ଼ା ରହିବା ଘର ।

ହାଣ୍ଡି ଭିତରେ ପିଠା, ଭୁଜା କଅଣ ଥିବ; ଏହା ଭାବି ନିଧି ହାତ ପୁରାଇଲା । ହାଣ୍ଡି ଭିତରେ ତ କିଛି ମିଳିଲା ନାହିଁ; ହାତ ଯାଇ ପଡ଼ିଲା

କୁକୁଡ଼ା ଉପରେ । ଏ ଅନ୍ଧାର ରାତିରେ ବଲୁଆ ଚତ୍କାର କଲା ସବୁ କୁକୁଡ଼ାଗୁଡ଼ାକ ପ୍ରାଣ ବକଲରେ ଫଡ଼ଫାଡ଼ ହୋଇ ଉଠିଲେ । ନଧି ହାତରେ ପଡ଼ଗଲା ଅଣ୍ଡାଟାଏ ତା ଉପରେ ମା କୁକୁଡ଼ା ବସି ତାଉ ଦେଉଥିଲା । ନଧି ଅଣ୍ଡାଟି ଧରି ହାତ ଟାଣି ଆଣିଲାବେଳକୁ ସବୁ କୁକୁଡ଼ା ଚେଇଁ ଉଠିଲେ । କକ୍‌କ୍, କକ୍‌କର କଅ ହୋଇ ପାଟି କଲେ । ଫଡ଼ଫଡ଼ ଡେଣା ବାଡ଼େଇଲେ । ଦୁଆରଟା ସେ ଶବ୍ଦରେ କମ୍ପିଗଲା ।

ଧରାପଡ଼ିବା ଭୟରେ ଗୁଳଆ ହୋଇ ନଧି ସେଠାରୁ ପଳାଇ ଆସୁଥିଲା । ହାତ ବାଜି ହାଣ୍ଡିଗୁଡ଼ାକ ଧଡ଼ଧାଡ଼ ହୋଇ ତଳକୁ ଗଡ଼ି ଆସିଲା । ସେ ଶବ୍ଦରେ ସମସ୍ତଙ୍କ ନିଦ ଭାଙ୍ଗିଗଲା । କବାଟ ଫିଟାଇ ଶାଶୁ, ଶଶୁର, ଶଳା—ସମସ୍ତେ ଦୁଆରକୁ ବାହାରି ପଡ଼ିଲେ । ପାଟି କରୁଥାଆନ୍ତି, ଚୋର, ଚୋର, ଚୋର । ଆମ ଘରେ ଚୋର ପଶିଅଛି ।

ଅନ୍ଧାର ରାତି, ମୁହଁକୁ ମୁହଁ ଦିଶୁ ନାହିଁ । କେବଳ ପାଟି ଶୁଭୁଅଛି ।

ନଧି ଚରବରରେ ଯାଇ ନିଜ ବିଛଣାରେ ଶୋଇପଡ଼ିଲା । ଭିତରୁ କବାଟ ବନ୍ଦ କରି ଦେବାକୁ ସମୟ କାହିଁ ?

ହାତରେ ଗୋଟାଏ ଅଣ୍ଡା । ସେଇଟାକୁ ସେ କରିବ କଅଣ ? ଅନ୍ୟ କିଛି ଉପାୟ ନ ପାଇ ତାକୁ ପାଟି ଭିତରେ ପୁରାଇଦେଲା । କିନ୍ତୁ ଗିଳିବ କେମିତି ? ଛୋଟ ତଣ୍ଟିରେ ଏତେ ବଡ଼ ଅଣ୍ଡାଟାଏ କି ଯିବ ନାହିଁ । ତାକୁ ଗାଲରେ ଜାକି କମଳ ଘୋଡ଼ିହୋଇ ଶୋଇପଡ଼ିଲା । ମିଛରେ ଘଙ୍ଘୁଡ଼ି ମାରିଲା—ସଅଁ ଧିଁ ।

ଶଶୁର ଘର ଲୋକମାନେ ଆଲୁଅ ଲଗାଇଲେ । ଘର ଦୁଆର ବୁଲି ଦେଖିଲେ, ଚୋର କଅଣ ନେଇଅଛି, କେଉଁଠି ଲୁଚି ରହିଅଛି । ମାତ୍ର ଚୋରକୁ ପାଇଲେ ନାହିଁ । କେବଳ ପିଣ୍ଡାତଳେ ହାଣ୍ଡିଗୁଡ଼ାକ ଗଡ଼ପଡ଼ି ଭାଙ୍ଗିଯାଇ ଥିବାର ଦେଖିଲେ ।

ଜ୍ୱାଇଁ ଶୋଇଥିବା ଘରର କବାଟ ମେଲା । ଚୋର ନିଶ୍ଚୟ ସେଇ ଘରେ ଲୁଚିଅଛି । ସମସ୍ତେ ସେ ଘର ଭିତରେ ପଶିଲେ । ନଧି ଗୁଳଆରେ ବିଛଣାରେ ଚିତ୍‌ପଟ ପଡ଼ିରହିଛି । ଖୁଉବ୍ ଜୋରରେ ଟାଣି ଟାଣି ନିଶ୍ୱାସ ମାରୁଅଛି । ସତେ ଯେପରି ନିଘୋଡ଼ ନିଦ ।

ଶଳାମାନେ ଯାଇ ତାକୁ ଡାକିଲେ । ଦେହରେ ହାତ ମାରି ଜୋରରେ ହଲାଇଦେଲେ । ଖ ବ୍ ନିଦରୁ ଉଠିଲା ଭଳି ନଧି ଆଖି ମଳି

ଝୁଣ୍ଟିଲା । କିନ୍ତୁ ପାଟିରୁ ପଦେ କଥା ବାହାରୁ ନ ଥାଏ । ପାଟିଭିତରେ ଯେ ଏତେ ବଡ଼ ଅଣ୍ଟାଟିଏ । କଥା କହିବ କିପରି ?

ସମସ୍ତେ ଘେରିଯାଇ ନିଧିକୁ ବହୁତ କଥା ପଚାରିଲେ । ସେ ପଦେହେଲେ କିଛି କହୁ ନାହିଁ ଦେଖି କାବା ହୋଇଗଲେ ।

ଜଣେ ହଠାତ୍ ତା ମୁହଁକୁ ଝୁଙ୍କି ଦେଲା । ଦେଖିଲା, ବାଁ ପାଖ ଗାଲଟା ଉପର ଫୁଲି ରହିଛି । ସେ କହି ପକାଇଲା, ଜୁଆଇଁଙ୍କ ଗାଲରେ ବଥ ଉଠିଛି । ସେଥିପାଇଁ ସେ କଥା କହିପାରୁ ନାହାନ୍ତି ।

ସମସ୍ତଙ୍କ ଆଖି ସେଇ ବଥ ଉପରେ ପଡ଼ିଲା । ଏତେ ବଡ଼ ବଥ ରାତିକା ରାତି ହୋଇଗଲା ? ଭାରି ଦରଜ ହୋଇଥିବ । ଜୁଆଇଁଙ୍କୁ କଷ୍ଟ ହେଉଥିବ ।

କିଏ ଆସ୍ତେ ଗାଲ ଆଉଁସି ଦେଲା । କେହି ବା ସମବେଦନା ଜଣାଇ ଚୁଚୁ କହିଲା ।

ବିଚାରରେ ଠିକ୍ ହେଲା; ରାତାରାତି ଯାଇ ଡାକ୍ତରବାବୁଙ୍କୁ ଡାକି ଆଣିବାକୁ ହେବ । ନ ହେଲେ ଜୁଆଇଁଙ୍କ କଷ୍ଟ ବହୁତ ବଢ଼ିଯିବ ।

ପାଖ ଆଖ ପାଞ୍ଚ କୋଶ ଅଞ୍ଚଳରେ ଧନବାବୁ ଡାକ୍ତରଙ୍କ ନାମ ଡାକ । ଧନବାବୁ କମ୍ପାଉଣ୍ଡରୀ ପାଶ କରି କେଉଁ ଡାକ୍ତରଖାନାରେ ଚାକିରି କରିଥିଲେ । ସେଠାରେ ଔଷଧ ଚୋରାଇ ଅନ୍ୟକୁ ବିକିବାରୁ ତଡ଼ାଖାଇ ଆସି ଘରେ ବସିଅଛନ୍ତି । ଡାକ୍ତରୀ କରି ବେଶ୍ ଦୁଇ ପଇସା ପାଆନ୍ତି । ତାଙ୍କ ନାଁ ଯେତିକି ବଢ଼ୁଥାଏ, ତାଙ୍କ ହାତରେ ରୋଗୀ ସେତିକି ବେଶି ମରୁଥାଆନ୍ତି ।

ଆଗ ଫିସ୍ ଟଙ୍କା ହାତରେ ଧରି ଡାକ୍ତରବାବୁ ରୋଗୀ ଦେଖିବାକୁ ଆସିଲେ । ଦୁଇ ଗାଲ, ମୁହଁ, ପିଠି, ଛାତି ବହୁତ ଚିପାଚିପି କଲେ । ଆଖି ଦେଖିଲେ । ଜିଭ ବାହାର କରି ଦେଖାଇବାକୁ ନିଧିକୁ କହିଲେ ।

ପାଟି କେଉଁଠି ମିଳୁଛି ଯେ, ଜ୍ୱାଇଁ ଜିଭ ଦେଖାଇବେ ? ଅନ୍ୟ ଉପାୟ ନ ଦେଖି ନିଧି ମୁଣ୍ଡ ହଲାଇ ମନା କରିଦେଲା ।

ଡାକ୍ତରବାବୁ ବଡ଼ ଗମ୍ଭୀର ହୋଇ କହିଲେ, "ବଡ଼ ଖରାପ ବେମାରି । 'ଗାବଥ' । ବୁଝି ପାରୁଛ ତ ? ଗାଲରେ ବଥ । ତାକୁ ଆମ ଡାକ୍ତରୀ ଭାଷାରେ ଗାବଥ କୁହାଯାଏ । ଏ ବେମାରି ଧରିଲେ ଅତି ଅଳ୍ପ ଲୋକ ବଞ୍ଚନ୍ତି । ଏ ପୁଣି ଛୁଆଁ ରୋଗ । ଡେଇଁଡେଇଁ ସମସ୍ତଙ୍କ ପାଖକୁ ମାଡ଼ିଯାଏ । ସଙ୍ଗେସଙ୍ଗେ ଅପରେସନ ନ କଲେ 'ହାର୍ଟଫେଲ୍' ହୋଇଯିବ ।

ଶଶୁର ବୁଢ଼ା ହାର୍ଟଫେଲ୍ କଅଣ ବୁଝି ପାରିଲେ ନାହିଁ । "କଅଣ କହିଲେ ବାବୁ" – ଉତ୍ତର ପଚାରିଦେଲେ । "ଆଜ ତ ହାଟ ପାଳି ନୁହେଁ ।"

ଡାକ୍ତରବାବୁ ତାଙ୍କ ଆଡ଼କୁ ଚାହିଁ କହିଲେ, "ଆରେ ହାର୍ଟଫେଲ । ହାର୍ଟ ବୋଇଲେ ଏ ଛାତି ।" ଏହା କହି ନିଜ ଛାତିରେ ଗୋଟାଏ ଚାପୁଡ଼ା ମାରିଦେଲେ । "ଫେଲ ବୋଇଲେ ଫାଟିଯିବ ।"

ଶଶୁର ମୁଣ୍ଡରେ ହାତ ଦେଇ ତଳେ ବସିପଡ଼ିଲେ । "ମୁଣ୍ଡ ନା ଫାଟିଯିବ ? ନାହିଁ ବାବୁ, ଯାହା ଟଙ୍କା ଲାଗିବ ମୁଁ ଦେବି । ଆପଣଙ୍କ ଗୋଡ଼ ଧରୁଛି । ଶୀଘ୍ର ଏହାକୁ ଭଲ କରି ଦିଅନ୍ତୁ ।"

ଶେଷରେ ଠିକ୍ ହେଲା । ସାଙ୍ଗେସାଙ୍ଗେ ଅପରେସନ କରାଯିବ । ଡାକ୍ତରବାବୁ ପକେଟରୁ ପେନ୍‌ସିଲ୍ କଟା ଦନ୍ଥଡ଼ା ଛୁରିଟା ବାହାର କଲେ । ହଳଦୀବଟା ଶିଳରେ ତାକୁ ପାଞ୍ଚ ଥର ଘଷି ଦେଲେ । ଶଶୁର, ଶଳା ଓ ଶାଶୁ ଆସି ନିଧି ମୁଣ୍ଡ, ଗୋଡ଼, ହାତ, ପେଟ ଅତି ଜୋରରେ ମାଡ଼ି ବସି ଧରିଲେ । ଡାକ୍ତର ଗାବଥରେ ଛୁରି ଚଳାଇ କାଟିବାକୁ ଲାଗିଲେ ।

ନିଧିକୁ ଯେଉଁ ଯମଯନ୍ତ୍ରଣା ହେଉଥାଏ, ତା କେବଳ ସେହି ଜାଣେ । ହଲଚଲ ହେବାର ଯୁ ନାହିଁ । ସମସ୍ତେ ଖୁବ୍ ଟାଣରେ ମାଡ଼ି ବସିଛନ୍ତି ।

ଡାକ୍ତରବାବୁ ତରତ୍ତର୍ ଗାଲରେ ଗାତ ଖୋଳିବାରେ ଲାଗିଅଛନ୍ତି । ଚିହୁଁଚିହୁଁ ଚମଡ଼ା କାଟି ମାଂସକୁ ବି ଚାଡ଼ି ପକାଇଲେ ।

ପଚିଲେ ଗୁଡ଼ାଏ ରକତ ବୋହିଲା । ଡାକ୍ତରଙ୍କ ହାତ, ନିଧିର ମୁହଁ, ଲୁଗାପଟା, ତକିଆ—ସବୁ ଲାଲ ହୋଇଗଲା । ତା ପରେ ଯେତେବେଳେ ଗାଲ ଫୁଟି ପାଟି ଭିତରର ଅଣ୍ଡା କଣା ହୋଇଗଲା, ସେତେବେଳେ ଖାଲି ଧଳା ଧଳା ନାଳୁଆ ପଦାର୍ଥ ବାହାରିଲା ।

ଡାକ୍ତର ବଡ଼ ଖୁସି ହୋଇଗଲେ । ତାକୁ ଦେଖାଇ କହିଲେ, "ଦେଖ, ଦେଖ । ବଥରୁ କେମିତି ପୂଜ ବାହାରୁଛି । ଗାବଥ କନା—ବହୁତ ପୂଜ ।

ତା ପରେ ଅଣ୍ଟାର ହଳଦିଆ କେଶର ବାହାରିଲା । ଡାକ୍ତର କହି ଉଠିଲେ, "ଦେଖ, କପରି ଗଣ୍ଡପୂଜ ହୋଇଯାଇଥିଲା । ତୁମ ଭାଗ୍ୟ ଭଲ —ମୋତେ ସାଙ୍ଗେସାଙ୍ଗେ ଡାକି ଆଣିଛ । ନ ହେଲେ ସକାଳକୁ ରୋଗୀ ଖତମ ହୋଇଯାଇ ଥାଆନ୍ତା ।"

ତଥାପି ନିଧି ଚୁଉପ୍ । ଲାଜ ସରମରେ କିଛି କହୁ ନ ଥାଏ । ଗାଲରେ ଗୋଟାଏ ଗାତ ହୋଇଗଲା ପରେ ଆଉ କଥା କହିବାର ଶକ୍ତି ବି ତାର ନ ଥାଏ ।

ଡାକ୍ତର ବାବୁ ତା ମୁହଁରେ ପଟି ବାନ୍ଧି ଦେଲେ । ଫିସ ଟଙ୍କା ଧରି ଘରକୁ ଚାଲିଗଲେ । ରାତି ଅନେକ ଥିଲା । ସମସ୍ତେ ଯାଇ ନିଜ ନିଜ ଘରେ ଶୋଇଲେ ।

ନିଧି ଆଜି ଶୋଇବ କଅଣ ? ଏକେ ତ ଭୋକରେ ପେଟ ଜଳୁଥିଲା, ବର୍ତ୍ତମାନ ଗାଲ ଜଳୁଛି । ମନ ଯାହା ହେଉଅଛି, ତାହା ଏକା ତାକୁ ହିଁ ଜଣା ।

ନିଧିର ସବୁ ରାଗ ପଡ଼ିଲା ଆଗ ଡାକ୍ତର ଉପରେ । ସେ ଭାବିଲା, "କି ମୂର୍ଖ ଡାକ୍ତର ରେ ବାବା । ତା ପରେ ଶ୍ୱଶୁର ଓ ଶଳାଙ୍କ ଉପରେ ରାଗିଲା । ମନେମନେ ସେମାନଙ୍କୁ ବହୁତ ଗାଳିଦେଲା ।

ଶେଷକୁ ମାଆ କଥା ମନେ ପଡ଼ିଗଲା । ତା ଉପରେ ସବୁଠାରୁ ବେଶି ରାଗ ହେଲା । ସେ କହିଥିବାରୁ ସିନା ନିଧି ଖାଇବା ପତରରେ ଅଧେ ଛାଡ଼ି ଆସିଲା । ତା ଫଳରେ ଏତେ ଦଣ୍ଡ ଭୋଗିଲା ।

× × ×

ସକାଳୁ ଉଠି ଦେଖିଲା ବେଳକୁ ଜୁଆଇଁଙ୍କ ବିଛଣା ଖାଲି । ଚାରିଆଡ଼େ ଧା’ ଧଉଡ଼ । ଖୋଜ ଖବର ନିଆଗଲା ।

କେଉଁ ଆଡ଼ୁ କିଛି ଖବର ନ ପାଇବାରୁ ନିଧି ଘରକୁ ଲୋକ ଆସିଲେ । ସେଠାରେ ଆସି ଶୁଣିଲେ, ନିଧି ଡାକ୍ତରଖାନାରେ ।

ଦୁଇ ମାସ ସେ ଡାକ୍ତରଖାନାରେ ପଡ଼ି ରହିଲା । ଘା ଭଲ ହେଲା ସତ; ମାତ୍ର ଗାଲର ସେ ଗାତ ଚିହ୍ନଟା ସେହିପରି ରହିଅଛି । ନିଧି ତା ଦୁଇ ଆଖି ଛୁଇଁ ନିୟମ କରିଛି, ସେ ଆଉ କେବେ ହେଲେ ଶ୍ୱଶୁର ଘରକୁ ଯିବ ନାହିଁ ।

———

## ଖମ୍ବିଆକ୍ତୁ ଦାସ

ମାଘ ମାସର କାଘୁଆ ଶୀତ
ବରଫ କଲା ପାଣି,
ସପନ ପେଢ଼ି ଫିଟାଇ ଦେଲା
କିଏ ମୋ ମନ ଜାଣି ।
ହାଇ ଉପରେ ଆସିଲା ହାଇ
ପାଠ ପଢ଼ାକୁ ଫାଙ୍କି
ଖଟ ଉପରେ ରେଜେଇ ଛଳେ
ଦେହକୁ ଦେଲା ଡାଙ୍କି
ନିଦ ମାଉସୀ ଆଖିରେ ମୋର
ବୁଲାଇ ଦେଲା ହାତ,
ଗୋଟିକ ପରେ ଗୋଟିଏ ଆସି
ଲଗାଇ ଦେଲେ ଯାତ ।
'ସାତରେ ଆଠ ମିଶିଲେ କେତେ'
ପଚାରି ଦେଲେ ସାଇ,
ଗୋଟି ଗୋଟିକା ଆଙ୍ଗୁଠି ଗଣି
ପାରିଲି ନାହିଁ କହି ।
ମୋଡ଼ିଲେ କାନ ପଳାଇ ଗଲି
ସଗେ ମୁଁ ଘର ଛାଡ଼ି,
କାହିଁ ବା ଥିଲା ବରଷା ପାଣି
ଆସିଲା ବେଗେମାଡ଼ି ।
ଆସିଲା ବାଘ ଫୁଲାଇ ନିଶ
ଆଖିରେ ନିଆଁ ଜଳେ,
ଧାଇଁଲି ଡରେ ବୁଜି ମୁଁ ଆଖି
ନ ପଡ଼େ ପାଦ ତଳେ ।
ମଣିଷ ପରି କହିଲା ବାଘ,
"ତୁହି ତ ବଦମାସ",
କହିଲି, "ନାହିଁ, ନାହିଁ, ମୁଁ ପରା
ଖମ୍ବିଆକ୍ତୁ ଦାସ ।"

———

# କର

ଆମ ସରପଞ୍ଚ ଗ୍ରାମ କର
କହେ ସବୁବେଳେ କାମ କର
ପଚ୍ଚରିଲ ଦିନେ     “ଭୁ,କର୍ଆ ବସିଚ୍”
ହସି ଉଠିଲେ ସେ କରକର ।
କହିଲେ, “ନୁହେ ମୁଁ ନଉକର
କାମ ପାଇଁ ନୁହେଁ ମୋର କର
ମାଲିକ ଅଟେ ମୁଁ ମୁଲକର,
ଜୀବ ସଙ୍ଗେ ଘାସ ମୁଲ କର ।
ଆମ ଗାଁଆଁ ନେତା ସୁଧାକର
କହେ, ‘ଦେଶ ପାଇଁ ଚିନ୍ତା କର’
ଲୋକ ଡାକି ଆଣି     ବସାଇ କହିଲେ
“ହଜିଛି ବଳଦ ନାୟକର,
କେ ନେଲା ବଳଦ ନ୍ୟାୟ କର ।”
ବଢ଼ିଗଲା ଯହୁଁ ଜଳକର
କହିଲା, “ସକଳେ ଦଳ କର,
ପାଞ୍ଚ ଟଙ୍କା କାହୁଁ     ଟିକସ ଗଣିବା
ନ ପାଇବା ଲାଭ ଟଙ୍କାକର,
ଆଜଠାରୁ ଧର୍ମଘଟ କର ।
ଗାଆଁ ଅବଧାନ ଭାସକର
ଦରମା ନିଅନ୍ତି ମାସକର
ପାଠ ନ ପଢ଼ାଇ     ପିଲାଙ୍କୁ କହନ୍ତି
“ପରୀକ୍ଷାରେ ଖାଲି ପାଶ୍ କର,
ମନ ମଉଜରେ ବାସ କର ।
ପଉଷ ମାସର ରବି କର
ଦେହକୁ ଅଟଇ ହିତକର
ହେଉଚ କାର୍ତ୍ତିକ     ବକର ବକର
ଖରା ପିଠେ କରି ଗୀତ କର ।
ମୁଢ଼ି ନଡ଼ିଆକୁ ହାତ କର ।

———

## କୋଡ଼ିଏ ଟଙ୍କା ହୋଇଲା ଲାଭ

ପିଲା ଦିନର ବନ୍ଧୁ ଶ୍ରୀଧର ଝିଅର ବାହାଘର,
କହି ଯାଇଛ ନେହୁରା ହୋଇ ଯିବାକୁ ତାହା ଘର ।
ନେବ ମିଠାଇ ଝୁଡ଼ି
ଲୁଗା ବ୍ଲାଉଜ ନ ନେଇ ଗଲେ ଲାଜରେ ଯିବ ବୁଡ଼ି ।

ମାଗୁଣି ଅଜା କାଗଜ ଧରି ହିସାବ କଲେ ବସି,
ବନ୍ଧୁ ଘରକୁ ବେଭାର ଦେବେ ପଡ଼ିବ ଟଙ୍କା ଅଶୀ,
ମୁଣ୍ଡଟା ଗଲା ଘୂରି
ଏତେ ଗୁଡ଼ାଏ ଖରଚ ହେବ, ମରିବ ଝୁରି ଝୁରି ।

ଟଙ୍କା ଚିନ୍ତାରେ ଘାରି ସେ ହେଲେ ଉଠିଲା ଦେହ ଥରି,
ଆଖି ଦୁଇଟା କପାଳେ ଖୋସି ଆଁଟା ଦେଲେ କରି ।
କହିଲ ଅଣବ୍ଲଣ
କହିଲେ ଆଈ, ସକେଇ କାନ୍ଦି ହେଲା ମୋ ସର୍ବନାଶ ।

ଆସ ବଳିଆ, କାଳିଆ ଆସ, ଆସରେ ବାବା ଧନ,
ତୁରନ୍ତ ଯାଇ ବଇଦ ଡାକ, ଦେବ ସେ ଇଞ୍ଜେକ୍ସନ ।
ପାଇବେ ଚେତା ଅଜା
ଗାଆଁ ଦେବୀଙ୍କୁ ଦେବି ମୁଁ ଭୋଗ ଲଡ଼ୁ, ଜଗୁଡ଼ା, ଖଜା ।

ମୋ ପାଇଁ ଖଣ୍ଡେ କିଣିବେ ଶାଢ଼ୀ କହିଥିଲେ ସେ କାଲି,
ନ ଦେଇ ଲୁଗା ଯାଆନ୍ତି ଚୁଲି, କାହାକୁ ଦେବି ଗାଳି ?
ଇଏ କି ଦଶା ହେଲା,
ମରିବେ ବୁଢ଼ା, ଏ ବୁଢ଼ୀକାଳେ ବିଧାତା ଦଣ୍ଡ ଦେଲା ।

ନାତିଏ ସବୁ ଧପାଇ ଗଲେ ଡାକିଲେ ଡାକତର
ଷ୍ଟେଥିସକୋପ ଝୁଲାଇ ବେକେ ଆସି ସେ ଚରଚର
ଦେଖିଲେ ଅଜା ନାଡ଼ି,
ମୁହଁ ଶୁଖାଇ କହି ସେ ଦେଲେ ଦୀର୍ଘଶ୍ୱାସ ଛାଡ଼ି ।

“ରୋଗଟା ଅତି ଜଟିଳ ହେଲା ବୁଢ଼ା ବୟସ ଜାଣି,
ନ କଲେ ଆୟୁ ଉପାୟ କରୁ ଶମନ ନେବ ଟାଣି ।
ଢଶେ ମରଣଯୋଗ
ଶହେଟି ଟଙ୍କା ଖରଚ କଲେ ପଳାଇଯିବ ରୋଗ ।”

ଚେହେଁକ ଉଠି କହିଲେ ଅଜା ତେଗା ଆଖିରେ ବୁହିଁ,
“ଶହେ ଟଙ୍କାର ଖରଚ ଶୁଣି ରୋଗ ମୋ ଆଉ ନାହିଁ ।”
ବେଘର ଦେବ ଯାଇ,
କୋଡ଼ିଏ ଟଙ୍କା ହୋଇଲା ଲାଭ, ଚିନ୍ତା ମୋ କାହିଁପାଇଁ ?

———

# ବାଳ ମେଳା

ପ୍ରକୃତି 'ରାଣୀର ଖେଳପଡ଼ିଆ ସେ
ସପନ' ଗଇଜ ମୋ ବାଳମେଳା,
ପାହାଡ଼ ଝରଣା ଦେହ ଛୁଇଁ ଛୁଇଁ
କରୁଥାଏ ବାଆ ହରଷେ ଖେଳା ।

ଦୋହଲାଇ ବନ ଗଛଲତା ଡାଳ
ଫୁଲକୁ ଗେହ୍ଲାରେ ଦିଏ ହସାଇ
କାକ, ପିକ, ବଣି, ହଳଦୀବସନ୍ତ
ଗାଉଥିବେ ଗୀତ ମନ ରସାଇ ।

ଡାଳେ ଡାଳ ଘସା ବାଇଦ ଶବଦେ
ପଡ଼ୁଥିବ ପାଦ ତା ତାଳେତାଳେ
ଆସୁଥିବ ଭାସି ବାଘ ଗରଜନ
ଦୂରୁ, ବହୁଦୂରୁ ରଜନୀ କାଳେ ।

ନାଚୁଥିବେ ଦଳଦଳ ହୋଇ ମୋର
ଆଦରର ନାତି ନାତୁଣୀମାନେ,
କେକୀ ନାଚ ଦେଖି ଦେଉଥିବେ ତାଳ
ବାଘ ଡାକ ଶୁଭୁ ନ ଥିବ କାନେ

ହସି ହସାଇବେ ଦୁନିଆ ଗୋଟାକୁ
ଗାନ୍ଧି, ଗୋପବନ୍ଧୁ, ନେହେରୁ ପନ୍ତ,
ନନ୍ଦନ କାନନ ପୁଣ୍ୟ ତପୋବନ
କରିଦେବେ ଏଇ ଅଶାନ୍ତ ଧରା ।

———

## ପିଲାଙ୍କ ଦାବୀ ଆଗ

ନନା ଆଣିଥିଲେ ଛବିବହି ଗୋଟେ
'ମନ ନାମ' ମନ ଜାଣି,
ଚଗଲା ଟିକିଟା ଝପଟି ଆସିଲା
ନେଇଗଲା ତାକୁ ଟାଣି ।
'ମନ' ସିନା ! ବଡ଼ 'ଟିକି' ସାନ ଭାଇ
ଟଣାଟଣି ବହି ପାଇଁ
ମନ କହେ ନେବ, ଟିକି ଆଁ କରି
କହେ, ନାହିଁ ନାହିଁ ନାହିଁ ।
'ଟିକି' ଟିକିପିଲା ଅଣ୍ଡ ଅମାନଆ
ଶିଖି ନାହିଁ କଅ ଖଅ,
ଛବିଟାଏ ଦେଖି ପଚାରେ ଆସି,
"ଏଇଟା କଅଣ କହ ।"
ଭାଙ୍ଗିଦେଲେ କଳ ମମି ଆସି କହି,
'ପିଲାଙ୍କ ଦାବୀଟା ଆଗ'
ଟିକି ହସିହସି ବହି ନେଇଗଲା,
ମନର ବଢ଼ିଲା ରାଗ ।

× × ×

ଲୁଚକାଳି ଖେଳ ଦାଣ୍ଡେ ଖେଳୁଥିଲେ
ମନ, ଟିକି, ଆଉ ପିଲା,
ମାରଣା ଗାଈଟା ଗୋଡ଼ାଇ ଆସିଲା
ଚହଳ ତ ପଡ଼ିଗଲା ।
ପଳାଇଲା ମନ, ଦଉଡ଼ି ନ ପାରି
ଟିକି ଗଲା ତଳେ ପଡ଼ି
ମାରଣା ଗାଈର ଶିଙ୍ଗ ଭୁଷ ଖାଇ
ଭେଁଏ କରି ଦେଲା ରଡ଼ି ।

ଦଉଡ଼ି ଆସିଲେ 'ମମି' 'ବାବୁ' ଘରୁ
ଟିକିକୁ ନେଲେ ସେ ଟେକି
ଚିଆରି କହିଲେ, "ଏଡ଼େ ଅବିବେକୀ",
ମନକୁ ପାଖରେ ଦେଖି ।
"ପଳାଇ ଆସିଲୁ ସାନ ଭାଇକୁ ତୋ
ମାରଣା ଗାଈକୁ ଦେଇ",
"ସାନଙ୍କର ଦାବୀ ଆଗ ପରା" ମନ
କହେ ଗାରୁଗାରୁ ହୋଇ ।
"ଗାଈ ଶିଙ୍ଗ ଭୁଷା ଆଗ ସେ ପାଇବ,
ତେଣୁ ମୁଁ ଆସିଲି ଚାଲି
ଛଡ଼ ବନ୍ଧଗୋଠା ଆଗ କେଉଁ ପରି
ନେଇ ଯାଇଥିଲୁ କାଲି ।

——

ନନ୍ଦ ପବ୍ଲିଶିଂ ପ୍ରେସ, କଟକ-୨